# ଇଣ୍ଡୋନେସିଆର ଲୋକକଥା

## ତୃତୀୟ ଭାଗ

ଶ୍ରୀ ସୁରେନ୍ଦ୍ର ମୋହନ ଶ୍ରୀଚନ୍ଦନ ସିଂହ



ନୂତନ ମୁଦ୍ରଣ, ୧୯୮୯

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ଗୋସ୍ୱାମୀ ପ୍ରେସ୍
ଆଲାମଚାନ୍ଦ ବଜାର, କଟକ ୭୫୩୦୦

ମୂଲ୍ୟ—ଟ ୭.୦୦

# ସୂଚୀ

# ଚଗ୍ରେଜା

ଇଣ୍ଡୋନେସିଆର ସମୁଦ୍ରକୂଳରେ ଚଗ୍ରେଜା । ବନ୍ଦରଟିଏ । ଆଗେ ଏ ଥିଲା ଗୋଟାଏ ରାଇଜର ରାଜଧାନୀ । ଆଉ ସେ ରାଇଜର ନାଁ ଥିଲା ଚଗ୍ରେଜା ।

ସେବେଳେ ଚଗ୍ରେଜାରେ ଜଣେ ରଜା ଥିଲେ । ବେଶ୍ ମଉଜିଆ, ସୌଖୀନିଆ ରଜା । ବଡ଼ ମନୁଆ ବି ।

ରଜାଙ୍କର ଅନେକ ରତ୍ନମୁଦି । ତା' ଭିତରେ ଗୋଟିଏ ମୁଦିକି ସେ ଖୁବ୍ ଭଲ ପାଉଥିଲେ । ସେଇଟା କୁଆଡ଼େ ତାଙ୍କର ପୂର୍ବପୁରୁଷର ଚିହ୍ନ । ତେଣୁ ସେ ମୁଦିଟା ତାଙ୍କର ଏତେ ପ୍ରିୟ ।

ଥରେ ରଜା ଗାଧୋଉ ଥାଆନ୍ତି । ସେଇ ମୁଦିଟିକୁ ସେ କୂଳରେ ରଖିଦେଇ ଥାଆନ୍ତି । ରଜାଘର ସେ ପୋଖରୀଟାର ପାଣି ଚମତ୍କାର ଭାବରେ ସଫା ଆଉ ଥଣ୍ଡା । କେତେଯୋଡ଼ି ନାଲିପଦ୍ମ ଫୁଟିଥାଏ । ସେ ପଦ୍ମ-ଗୁଡ଼ିକର ଛବି ଜଳରେ ଫୁଟି ଦିଶୁଥାଏ । ଗୁଡ଼ାଏ ଭଅଁର ପଦ୍ମଫୁଲଗୁଡ଼ିକର ଚାରିପାଖେ ଗୁଣୁଗୁଣୁ କରୁଥାଆନ୍ତି । ରଜା ଗାଧୋଇଲାବେଳେ ସେ ସବୁ ଦୃଶ୍ୟ ଦେଖୁଥାନ୍ତି । ଏମିତି ଦେଖାଦେଖିରେ ସେ ଅନେକ କଥା ଭୁଲିଗଲେ । ଭୁଲିଯିବାଟା ସ୍ୱାଭାବିକ୍ ବି ।

ଅଳ୍ପ ଦୂରରେ ଗୋଟିଏ ବଗୁଲିଆ ପିଲା ଖେଳୁଥିଲା । ତା' ମନକୁ ଗୋଟାଏ ଖିଆଲ ଆସିଲା । ସେ ଭାବିଲା ରଜାଙ୍କ ସହିତ ସେ ଗୋଟାଏ ମଜା କରିବ । ସେ ଲୁଚାଇ ଦେବ ମୁଦିଟାକୁ । ରଜା ଖୋଜିବେ ।

ପିଲାଟି ପଡରେ ସେଇଆ କଲା । ସେ ଚୁପ୍‌ଚାପ୍ ମୁଦଟିକ ଉଠାଇନେଲା । ସେ ପାଖେ କୋଉଠି କାଦୁଅରେ ଲୁଚାଇଦେଲା । ସେ ଖେଳୁ ଖେଳୁ ଘରକୁ ଗ୍ଲଲଗଲା ।

ଏଣେ ରଜା ଗାଧୋଇ ପାଧୋଇ ଉଠିଲେ । ଉଠିଲା ପରେ ପରେ ଲୁଗାପଟା ବଦଳ ସିଧା ଗଲେ ଜଆସକୁ । ସେ ଭୁଲଗଲେ ରତ୍ନମୁଦ କଥା ।

ଜଆପରେ ଖାଇପିଇ ସାରି ବିଶ୍ରାମ ନେବାକୁ ଗଲେ । ହଠାତ୍ ମନେପଡ଼ିଲା ମୁଦ ! ମୁଦ ନାହିଁ । ଗଲା କୁଆଡ଼େ ! ରଜା ଭାବିଲେ···ମଲା··· ମଲା ସିଏ ଗାଧୋଉ ଥିବାବେଳେ ଓହ୍ଲାଇ ଦେଇଥିଲେ ବୋଧହୁଏ । ଖୋଜାଲୋଡ଼ା ହେଲା । ମୁଦଟି ମିଳିଲାନ । ରଜା ବଡ଼ ଦୁଃଖିତ ହେଲେ ।

ଡେଙ୍ଗୁରା ହଆଗଲା : ରଜାଙ୍କର ରତ୍ନମୁଦ ହଜଛ । ସିଏ ଖୋଜ ଆଣିଦେବ, ବହୁ ଧନରତ୍ନ ଉପହାର ପାଇବ ।

ଧନରତ୍ନ ଲୋଭରେ କେତେକ ଲୋକ ଆସିଲେ । ଖୋଜଲେ କନ୍ତୁ ପାଇଲେନ ।

ଆଉ ଆସିଲା ସେଇ ପିଲାଟି । ହାତ ଯୋଡ଼ିଲା । ରଜାଙ୍କୁ କହିଲା,

‘କ୍ଷମାକର ତୁମ୍ଭେ ଆଦେଶ ଦଅ,

ମୁଦ ଗୋଟି ଦେବ ଆଣି,

ପଣ ଅନୁସାରେ ଧନ ରତନ

ଦେବେ ତ ମୋ’ ପାଇଁ ଗଣି !!’

ରଜା କହିଲେ, ‘ଏଥିରେ ଆଉ ସନ୍ଦେହ ଅଛିନା ! ସବୁଏଁ ତ ଚେଷ୍ଟା ଚଳାଇଚନ୍ତି । ଯାଅ···ତମେ ବ ଲାଗିପଡ଼ । କଏ ଜାଣେ କା’ ଭାଗ୍ୟରେ କ’ଣ ଅଛି !’

ବହୁ ପଛରେ ଆସିଥିବା ସେଇ ସାନପିଲାଟି ମୁଦି ପାଇଲା । କ ! ସିଏ ପାଆନ୍ତାନି ତ ଆଉ କିଏ ପାଆନ୍ତା !

ରଜା ବହୁତ ଖୁସି ହେଲେ । ପିଲାଟିକୁ ଖୁବ୍ ସ୍ନେହ ଶରଧା କଲେ । କହିଥିବା ଅନୁସାରେ ଧନଦରବ ଦେଇ ତା'କୁ ପଠାଇ ଦେଲେ ।

ଏ ଭିତରେ କେତେଦିନ କଟିଗଲା । ଏବେ ପିଲାଟିର ବୁଦ୍ଧି ଆସିଲାଣି । ସେ ଅନେକ କଥା ବୁଝିଲାଣି । ପାଠଶାଠ ପଢ଼ିଲାଣି । ସେଦିନ ଯୋଉ କାମ ସେ କରିଥିଲା, ସେ କଥା ଭାବି ସେ ହସେ । ମାତ୍ର ହସ ପରେ ପରେ ସେ ଗୁନୁଆଁ ହେଇଯାଏ । ଯଦି ଆଉ କୋଉ କଥା··· ଏମିତି କଥାଟାଏ ଭବିଷ୍ୟତରେ ଘଟେ, ରଜା ମୋତେ ପଚାରିବେ । ମୁଁ ତ କିଛି କହି ପାରିବିନି । ରଜାଘର ଖଣ୍ଡାରେ ଜୀବନଟା ଠକ୍ କରି ଚାଲିଯିବ ।

ପିଲାଟି ଯାହା ଭାବୁ ଥିଲା, ସେ'ଆ ହେଲା ।

ସତକୁ ସତ ଦିନେ ରଜାଘରୁ ଡକରା ଆସିଲା । ପିଲାଟି ଗଲା ଉଆସକୁ । ସେଇଠି ସେ ଜାଣିଲା ! ତବେଜାକୁ ଆସିଛନ୍ତି ଜଣେ ସଉଦାଗର । ସେ ଆଣିଛନ୍ତି ଖଣ୍ଡେ କାଠର ବାଡ଼ି । କାଠଟି କଳାରଙ୍ଗର ଗୋଲକାର ବାଡ଼ିଟି । ଉଭୟ ପାଖ ସମାନ ମୋଟା । ମାତ୍ର ସୌଦାଗର ପଚାରୁଛନ୍ତି ରଜାଙ୍କୁ ।

ଏଇ ଯେ ଗୋଟିଏ କାଠର ବାଡ଼ି···

କହିଦିଅ ଅଗମୂଳ ।

କହିଲେ ବୋଇତଟା ତମର ।

'ନ କହିଲେ ରାଇଜରୁ ଅଧା ମୋର !'

ରଜାଙ୍କ ମୁଣ୍ଡକୁ ବୁଦ୍ଧି ଆସୁନି । ସେ ବହୁତ ଭାବିଲେ । ତାଙ୍କ ରାଣୀ ଭାବିଲେ । ମନ୍ତ୍ରୀ ଆଉ କର୍ମଚାରୀମାନେ ଭାବିଲେ । ହେଲେ, କାହାରି ମୁଣ୍ଡକୁ ଉତ୍ତରଟା ଆସୁ ନ ଥାଏ ।

ରଜା କହିଲେ,

'ବୁଦ୍ଧିଲ୍ ତ ପିଲା, ଏ କଥାର ଉତ୍ତର ତୁ କହିବୁ'

କହିଲେ ପାଟଛତ୍ର, ରାଜଗାଦି ପାଇବୁ ।

ନ କହିଲେ ଶୂଳ ମୁହେଁ ଯିବୁ !'

ସୌଦାଗର ଆଉ ଗୋଟାଏ ପ୍ରଶ୍ନ ପଚାରିଛନ୍ତି । ତାଙ୍କ ପାଖରେ ଅଛନ୍ତି ହଳେ ହଂସ । ଏକା ରଙ୍ଗର । ଏକାମୋଟା । ଏକାଭଳି ସବୁ ଏକା । ହେଲେ, ସେ ଭିତରେ ଅଛି ପଟେ ମାଈ, ଆଉ ପଟକ ଅଣ୍ଡିରା ! ସୌଦାଗର ରଜାଙ୍କୁ ପଚାରୁଥାଏ !

'ଦେଖ ହେ ରଜା ହଂସଯୋଡ଼ା,

ଗୋଟାଏ ମାଈ, ଗଟେ ଅଣ୍ଡିରା

କୋଉଟା କିଏ କହ !

କହି ପାରିଲେ ବୋଇତଯାକ ଧନଦରବ ନିଅ ।

ନ ପାରିଲେ ମୋ ରାଇଜରୁ ଯାଲେ ଦିଅ !!'

ରଜା ଘଣ୍ଟା ଘଣ୍ଟା ଧରି ହଂସ ଦିଓଟିକୁ ଦେଖିଲେ । ସେଥିରୁ କୋଉଟା ମାଈ କୋଉଟା ଅଣ୍ଡିରା ଜାଣି ପାରିଲେନି । ଆଉମାନଙ୍କର ଅବସ୍ଥା ବି ସେ'ୟା ।

ରଜା ଏ ପିଲାଟିକୁ ଏଇକଥା କହିଲେ । ଆଦେଶ ଦେଲେ, 'ଏ କଥାର ଠିକ୍ ଉତ୍ତର କହ । କହିଲେ, ରାଇଜଦେବି ତୋ'ର ! ନ କହିପାରିଲେ କଟି ଯିବ ଶିର ।'

ପିଲାଟିର ମନ ଶୁଖିଗଲା । ହେଲେ, ସେ ନିଜର ମନର ଭାବକୁ ଭିତରେ ଭିତରେ ଚପାଇ ରଖିଲା । କାହାକୁ କିଛି କହିଲାନି ।

ରଜାଙ୍କୁ ସେ କହିଲା,

'ହଜୁର, ଏ ବଡ଼ ଗହନ କଥା,

ଭାବିଲେ ଘୂରଇ ସଜନ ମଥା,

ମୁହିଁ ଘୁରି ଅନେ କ ଦେଶ ସ୍ଥାନ,
ଦେବେ କହେ ମୋତେ ସାତୋଟି ଦିନ !'
ରଜା ସଙ୍ଗେ ସଙ୍ଗେ ମଞ୍ଜୁର କରିଦେଲେ ।

ପିଲାଟି ଫେରିଗଲା ଘରକୁ । ବଡ଼ ସଙ୍କଟରେ ସେ ପଡ଼ିଗଲା । କେଉଁଠୁ ସେ ଉତ୍ତର ପାଇବ ? ସେ ବହେ କାନ୍ଦିଲା ।

ଏ ଭିତରେ ଦିନ ଗଡ଼ି ଗଡ଼ି ଯାଉଥେ । ଦିନେ ଦି' ଦିନ ହୋଇ ଛ'ଦିନ ଗଲା । ସାତଦିନ ଦିନ ତା'ମନରେ ଏତେ ଦୁଃଖ ଆସିଲା ଯେ ତାକୁ କଥାରେ କହି ହେବନି । ସେ ନିରାଶ ହୋଇଗଲା । ଆଉ ଭଗେର୍ଜା ପାଖରେ ବନ୍ଧାଯାଉଥିବା ନଈକୁ ଡେଇଁ ପଡ଼ିଲା । ଭାବିଲା, ଏମିତି ହେଲେ



ଜୀବନଟା ଯାଉ । ସେଠି ରଜାଆଗରେ ଅପମାନ ପାଇ ମରିବାଠୁଁ ଏମିତି ମରିବା ଭଲ ।

ପିଲାଟିର ମରିବାର ନ ଥିଲା । ସେ ଭାସି ଭାସି ଯାଇ ସମୁଦ୍ର କୂଳରେ ପହଞ୍ଚିଲା । ଆଉ ସେଇପାଖରେ ଲଙ୍ଗର ପକାଇ ଥାଏ ଜାହାଜଟି ।

ସେ ଜାହାଜ ବା ବୋଇତର ଲୋକମାନେ ପିଲାଟିକି ପାଣିରୁ ଘେନି ନେଲେ । ସେମାନେ ତା'ର ସେବାଶୁଶ୍ରୂଷା କଲେ ।

ଏ ସମୟରେ ଜଣେ ନାଉରିଆ ପଚାରିଲା, 'ହଇହୋ, ଭାଇ ରଜା କ'ଣ ଏଇ ପ୍ରଶ୍ନ ଦୁଇଟିର ଉତ୍ତର ଦେଉନାହାନ୍ତି । ଏତେବଡ଼ ମୂଲକରେ ଜଣେ କଏ ବି ବୁଦ୍ଧିଆ ନାହାନ୍ତି !'

ଆଉ ଜଣେ କହିଲା, 'ମୁଁ ଆଗେ କହିପାରିବୁ ନା ଉତ୍ତରଟା !'

ବୁଢ଼ା ନାଉରିଆ ଜଣେ କହିଲା, 'ଫୁଃ ! ଇଏ ଗୋଟେ ଗୋଟେ ପ୍ରଶ୍ନ !

କହୋ ପାଣିରେ ପକାଅ ବାଡ଼ି

ଉଶ୍ୱାସ ଅଂଶଟା ଉପରକୁ ଯିବ,

ଗଛୁଆଟା ଯିବ ବୁଡ଼ି ।

ଗଛୁଆମୂଳ,

'ଉଶ୍ୱାସ ଅଂଶଟି ଅଟଇ ଚୂଳ !'

'ହେଲା ! ଆମେ ବୁଝିଲୁ । ମାତ୍ର ଆର ଉତ୍ତରଟି ?'

'ସେଇ ପାଣି ! ହେଲେ, ଏ ପାଣି ପାଇଁ ପୋଖରୀକି ଯିବାକୁ ହେବ ।'

'ବୁଝି ପାରିଲିନି ।' ନାଉରିଆ ଜଣେ କହିଲା ।

'ହଂସ ଦୁଇଟିକି ନିଅ ପୋଖରୀର କୂଳ,
ଆଗେ ଆଗେ ଯିବ ଯିଏ ଆଗେ ଯିବ ଜଳ;
ଜାଣିବ ସେ ପକ୍ଷୀଟୋଟି ଅଟଇ ପୁରୁଷ;
ପଛକୁ ରହିଲା ଯିଏ ସିଏ ମାଈ ହଂସ !'

ଶୁଣୁଥିଲା ଏ ସବୁକଥା ସେ ପିଲାଟି । ସେ ଜାଣିଗଲା ଦୁଇଟିଯାକ ପ୍ରଶ୍ନର ଉତ୍ତର । ଆଜ ତା'ର କଣ୍ଠ ଅନୁସାରେ ଶେଷ ଦିନ । ସେ ଆଜ ଉତ୍ତର କରିବନ ।

ପିଲାଟି ଉଠି ବସିଲା ।

ସେ ଏକମୁହାଁ ଧାଇଁଲା ।

ରଜାଙ୍କୁ ଏଇ ଅନୁସାରେ କହିଲା । ସୌଦାଗର କହିଲା, 'ସାବାସ୍ ! ପିଲାପଣ ପିଲାଟିଏ ତୁ ରେ ।'

ରଜା କହିଲେ, 'ସାବାସ୍ ! ତୁ ବସିବୁ ମୋ' ସିଂହାସନରେ ।'

ରଜା ଆଜ ସିଂହାସନରେ ବସିଲେନ । ସେ ପିଲାଟି ବସିଲା । ରଜା କଚ୍ଛଦିନ ବୁଝାସୁଝା କଲେ । ସୌଦାଗର ସବୁ ଧନରତ୍ନ ଦେଲା । ପିଲାଟି ମୂଳକର ରଜା ହେଲା । ସୁଖରେ ଦିନ କାଟିଲା । ମାତ୍ର ସେ ବହୁତ ଶାସ୍ତ୍ର ପୁରାଣ ପଢ଼ିଲା । ସେ ଅନେକ ଜ୍ଞାନ ଅର୍ଜିଲା । ତେବେ, ମଝିରେ ମଝିରେ ଏସବୁ କଥା ମନେ ପକାଇ ସିଏ ହସି ଉଠେ ! ତା'ପରେ କହେ, 'ଏଇଟା ଇ ଭାଗ୍ୟ।'

# ରାଡେ଼ନ ପାଙ୍କ

୧

ଶହ ଶହ ବର୍ଷ ତଳର କଥା । ସେତେବେଳେ ଜେଙ୍ଗାଲରେ ଜଣେ ରାଜା ଥାଆନ୍ତି । ତାଙ୍କର ତିନିଭାଇ, ଗୋଟିଏ ଭଉଣୀ । ସେମାନେ ସାରା ମୁଲକକୁ ନିଜ ନିଜ ଭିତରେ ଭାଗ ବଣ୍ଟିଆରି କରି ନେଇଥାଆନ୍ତି । ବଡ଼-ଭାଇ ଥିଲେ କେଦିରିର ରଜା । ଦ୍ୱିତୀୟ ଭାଇ ଭାଗରେ ପଡ଼ିଲା ଗୁରାଓ୍ୱାନ୍ । ତୃତୀୟ ଭାଇ ଥିଲେ ସିଙ୍ଗାସାରିର ରାଜା । ମାତ୍ର ଭଉଣୀ ଭାଇମାନଙ୍କଠୁ ଅଲଗା ରହିଲେ । ସେ ବିବାହ କରିବାକୁ ରାଜି ହେଲେନି । ସେ ହେଲେ ସନ୍ନ୍ୟାସିନୀ । ରାଜମହଲର ସୁଖସୁବିଧା ଛାଡ଼ିଲେ । ସେ ରହିଲେ ବଣରେ । ଏଇ ରାଜଜେମାଙ୍କ ନାଁ ଥିଲା କଲି ସୁସି ।

ଆଉ ଜେଙ୍ଗାଲ ରଜାଙ୍କର ଦେଢ଼ଟି ଜଣି ପୁଅ । ତାଙ୍କର ବଡ଼ପୁଅଙ୍କ ନାଁ ଭୁମେରାଙ୍ଗ ବ୍ରଜନାଥ । ପଞ୍ଚମ ପୁଅ ଥିଲେ ପାଞ୍ଜିଇନୁ କର୍ତ୍ତିପତି । ଏଇ ରାଜକୁମାରଙ୍କୁ ଲୋକେ କହୁଥିଲେ ରାଡେନ ପାଁଜ । ଗୋଟା ନାଁକୁ ଲୋକେ କହୁ ନ ଥିଲେ ।

ଇଣ୍ଡୋନେସିଆ ଭାଷାରେ ରାଜକୁମାରଙ୍କୁ କହନ୍ତି, ରାଡେନ୍ । ତେଣୁ ଆମ ଭାଷାରେ ରାଡେନ୍ ପାଁଜର ମାନେ ହେବ ରାଜକୁମାର ପାଁଜ ।

କେଦିରି ରାଜା ତାଙ୍କ ବାବାଙ୍କ ଭାଇ । କେଦିରି ରାଜାଙ୍କର ଝିଅ ଦେବୀ ଶେଖର ତାଜ । ରାଜକୁମାର ପାଁଜ ଓ ଦେବୀ ଶେଖର ତାଜ ଖୁବ୍ ଘନିଷ୍ଠ ଥିଲେ । ସେଇସମୟରେ ସେମାନଙ୍କର ବାବା ମା' ଠିକ୍ କଲେ ଯେ ଏ ଦିହେଁ ବିବାହ କରିବେ । ସେଥିପାଇଁ ସବୁ ଠିକ୍‌ଠାକ୍ ହୋଇଯାଇଥିଲା । ହେଲେ, ଏ ଦିହେଁ କେହି କାହାକୁ ଦେଖି ନ ଥାଆନ୍ତି, ଜାଣିବା ତ ଦୂରର କଥା ।

ଏ ଭିତରେ ପିଲା ଦୁଇଟି ବଡ଼ ହୋଇଗଲେ ।

ଥରେ ଘଡେନ ପାଁଜ ବୁଲି ଯାଉଥିଲେ । ସାଥିରେ ତାଙ୍କର ବନ୍ଧୁମାନେ । ସେ ତାଙ୍କର ଜଣେ ଜ୍ଞାତିଙ୍କ ଘରେ ବିଶ୍ରାମ ନେଲେ । ସେ ଜ୍ଞାତି ଥିଲେ ମତି କୃଦନର୍ଭ୍ୱାର୍ସା । ଜେଙ୍ଗାଲି ରଜାଙ୍କ ଜଣେ ପୂର୍ବଜ ସେ ।

ଏଇଠି ଖିଆପିଆ ହେଲା । ଆହାର ପରେ ପାନ ଦିଆଯାଏ । ପାନ ଆଣିଦେଲା ଝିଅଟିଏ । ଖୁବ୍ ସୁନ୍ଦର । ଘଡେନ୍ ପାଁଜ ଝିଅଟିକି ଦେଖି ଦେଖି ତା'କୁ ପସନ୍ଦ କରି ପକାଇଲେ । ଖାଲି ପସନ୍ଦ ନୁହେଁ ମନେ ମନେ ତାକୁ ବାହା ହେବାକୁ ବି ଭାବିନେଲେ । ଝିଅଟି କିଏ ବୋଲି ତାଙ୍କ ମନରେ ଜାଣିବାକୁ ଆସିଲା ।



“ଭଲ ଝିଅଟିଏ ତ !” ପାଁଜ କହିଲେ ।

ପତି ହସିଦେଲେ । ମୁହଁଖୋଲି କିଛି କହିଲେନି ।

“ତା' ବ୍ୟବହାର, ଚାଲିଚଳନ ବି ଖୁବ୍ ରୁଚିଶୀଳ !”

ପଣ୍ଡିତ ପୁଣି ମୁରୁ ମୁରୁ ହସିଲେ ।

"ମୋ କ'ଣ ରାଜପରିବାରର ?"

"କୁମାର !"

"କେଉଁ ପରିବାରର ?"

"ଆମର ।"

"ମାନେ...?"

"ମୋ'ର ସାନଝିଅ ।"

ରାଡେନ୍ ପାଁଜ ଟିକେ ଘାବରେଇ ଗଲେ । ଇଏ ଗୋଟେ ଅପ୍ରସ୍ତୁତ ଅବସ୍ଥା । ସେ ଟିକେ ନୀରବ ରହିଲେ । ପଣ୍ଡିତଙ୍କ ଆଡ଼କୁ ଚାହିଁ ରହିଲେ । ମନେ ମନେ କଳନା କଲେ, ସିଏ କିଛି ଅକଥା କହି ନାହାନ୍ତି ତ । ତା'ପରେ ପଣ୍ଡିତଙ୍କ ମୁହଁରେ ସେ ଦେଖିଲେ ଏକ ଉଜ୍ଜ୍ୱଳତା । ନା...ନା, ପଣ୍ଡିତ ଏ କଥାକୁ ଖରାପ ବୋଲି ଭାବୁନାହାନ୍ତି ।

ରାଡେନ୍ ପଚାରିଲେ, "ନାଁ ତା'ର...?"

"ଅଙ୍ଗରାଣୀ !"

"ମୁଁ ଅଙ୍ଗରାଣୀକି ପସନ୍ଦ କରୁଛି ମୁଁ ତା'କୁ ବିବାହ କରିବି ।"

"କିନ୍ତୁ କୁମାର...!"

"ଦେଖି ଶେଖର ରାଜାଙ୍କ କଥା କହୁଛ ତ ?"

"ସେ ଯେ ତମର ବାଗ୍‌ଦାତ୍ତ !"

"ପିଲା ଖେଳ !"

"ନା...ନା...! ପିଲା ଖେଳ ନୁହେଁ । ଆପଣଙ୍କ ବାବା ଓ ଦାଦା ସମସ୍ତେ ମିଶି ନିର୍ବନ୍ଧ ସାରିଛନ୍ତି ।"

"ବିବାହ ମୁଁ କରିବି । ବାବା ଓ ଦାଦା କରିବେ ନାଇଁ । ତେଣୁ ଏଇ କାମରେ ମୋ' ମତଟା ବଡ଼ ।"

"ତା' ନୁହେଁ କୁମାର !"

"ତା' ହେବ ଇ ହେବ," ରାଡେନ୍ ପାଁଜ ଜିଦ୍ ଧରି ବସିଲେ । ପଣ୍ଡିତଙ୍କର କୌଣସି ଆପତ୍ତି ଶୁଣିଲେନି ।

ଶେଷରେ ତାଙ୍କର ଜଦ୍ ରହିଲା ।

ସେ ବିବାହ କଲେ ଅଙ୍ଗରାଣୀଙ୍କି ।

ବରକନ୍ୟା ଫେରିଲେ ଉଆସକୁ । ରାଜା ଏ ଖବର ପାଇଗଲେଣି । ସେ ରାଗରେ ଗରଗର ହେଉଥାଆନ୍ତି । ଏତେ ଅବାଧ ଏ ପୁଅ ! ବାବା, ଦାଦାର କଥା ରଖିଲାନି ? ଗୁରୁଜନଙ୍କ କଥା କ ପାଣିର ଗାର ? ସେମାନଙ୍କ କଥାର କିଛି ମୂଲ୍ୟ ନାହିଁ ? ନା···ନା, ସେ ପାଜକ କ୍ଷମାକରି ପାରିବେ ନାହିଁ । ପାଜକ ସେ ଦଣ୍ଡ ଦେବେ । ସେ ପାଟିକରି ଉଠିଲେ, "ଯା··· ଚାଲିଯା··· ! ମୋ ସାମ୍ନାରେ ତୋ'ର ଆଉ ଜାଗା ନାହିଁ ।"

ପୁଅବୋହୂ ତାଙ୍କୁ ପ୍ରଣାମ ଜଣାଇଲେ ।

"କ'ଣ ନକଲୁ ! ଦେଖା ଶେଷର ତାକର ଅବସ୍ଥା କଅଣ ହେବ ?"

ରାଉତେନ୍ ପାଁଜ କାଇଲ ମାନଲେ । କ୍ଷମା ମାଗିଲେ । ଅଙ୍ଗରାଣୀ ଲୁହ ଝରାଇଲେ ।

ତେଣେ କେନ୍ଦ୍ରରେ ଏ ବିବାହର ଖବର ପହଞ୍ଚିଲା । କେନ୍ଦ୍ରରାଜା ରାଗି ନିଆଁ ବାଣ ହୋଇଗଲେ । ନହ ଆଗପଛ ଭୁଲିଗଲେ । ଠିକ୍ କଲେ, ଜେଙ୍ଗାଲୁ ଉପରେ ପ୍ରତିଶୋଧ ନେବେ । ଏ କ'ଣ କମ୍ ଅପମାନ ! ସେ ପାଁଜଟା ପାଜଟାଏ ହେ ! ଠିକ୍ କଲେ, ଜେଙ୍ଗାଲୁ ଉପରେ ଚଢ଼ାଉ ହେବ ।

କେନ୍ଦ୍ରରେ ରାଜାଙ୍କର ଜଣେ ମନ୍ତ୍ରୀ ଥିଲେ । ତାଙ୍କ ନାଁ ପ୍ରଶାନ୍ତ । ସେ ଲଢ଼େଇକୁ ପସନ୍ଦ କରୁନଥିଲେ । ସାମାନ୍ୟ ଘଟଣାଟାଏ । ଏଇ ଘଟଣାରୁ, ଏଇ ଝିମିଟି ଖେଳରୁ ମହାଭାରତ ହେବ । ଦୁଇ ଭାଇ···ଦୁଇ ପରିବାର ଭିତରେ ହେବ ଯୁଦ୍ଧ । ଦୁଇ ମୁଲକରେ ଯୁଦ୍ଧର ନିଆଁରେ ପୋଡ଼ିମରିବେ ହଜାର ହଜାର ନିର୍ଦ୍ଦୋଷ ଲୋକ ।

ସେ ରାଜାଙ୍କୁ ବୁଝାଇଲେ,

"ମୋ' କଥା ଶୁଣିବା ହେଉ··· !"

"ଯୁଦ୍ଧ ନହେବା ଛଡ଼ା ଆଉ କିଛି ଥିଲେ କୁହ !"

"ଯୁଦ୍ଧଟା ଶେଷକଥା ହେଉ···ହଜୁର !"

"ମାନେ···?"

"ହଠାତ୍ କରି ଲଢ଼େଇ ନ ହେଉ···!"

"ତା'ହେଲେ, ଉପାୟ ?"

"ଆପଣଙ୍କ ଭଉଣୀ ।"

"କଲସୁସି ତ ! ସେ କ'ଣ କରିବ ?"

"ସେ ହେଲେ ଏ ଦୁଇ ପରିବାରର ସେତୁ । ସେ ସମାଧାନ କରିପାରନ୍ତି । କିଛି ବୁଦ୍ଧି ବତାଇ ପାରନ୍ତି । ଆପଣ ତାଙ୍କୁ ଡକାନ୍ତୁନା !"

ଦୂତ ଗଲା କେପୁକଂଗନ । କେପୁକଂଗନ୍ ବନରେ ଆଶ୍ରମ କରି ରହୁଥାଆନ୍ତି କଲସୁସି ।

ସେ ଖବର ପାଇ ସଙ୍ଗେ ସଙ୍ଗେ କେଦ୍ରି ଗ୍ଭଲିଲେ । ଭାଇ ଭଉଣୀଙ୍କ ଭିତରେ ଆଲୋଚନା ବିସ୍ତୃତ ହେଲା । ଶେଷରେ କଲସୁସି କହିଲେ, "କିଛି ଭାବନା କରନ୍ତୁନି । ମୁଁ ଏହାର ଉଚିତ ବ୍ୟବସ୍ଥା କରୁଚି ।"

"ହେଲେ, ମୋ' ଝିଅର କ'ଣ ହେବ ?"

"ପହିଲେ କଷ୍ଟ···ଦୁଃଖ···!"

"ପରେ ?"

"ସୁଖ !"

"ସୁଖ ମାନେ ? ମୋ' ମନୋବାଞ୍ଛା ପୂରିବ ତ ?"

"କଥାରେ ମୋ'ର ଭରସା ରଖ···!"

ଦେବୀ ଶେଖର ପାଇଚି ଦୁଃଖ···
ଅନ୍ତେ ହେବ ଭଲ ।
ଗ୍ଭଣ୍ଡେନ୍ ପାଁଜ ଧରିବ ହାତ
ଶୁଣିଯା କଥା ମୋର ।"

କେଦ୍ରି ରାଜାଙ୍କ ମୁହଁରେ କିଛି ଆଶ୍ୱସ୍ତିର ଚିହ୍ନ ଫୁଟିଲା । ତେବେ ବି ମନରେ ପୂରା ବିଶ୍ୱାସ ଆସି ନ ଥାଏ ।

କଲସୁସି ଜେଙ୍ଗାଲାରେ ପହଞ୍ଚିଲେ ।

ସେ ବଡ଼ନନାଙ୍କୁ ବୁଝାଇ ଦେଲେ । ସଡ଼େନ୍ ପାଁଜ ବିଶ୍ୱସ୍ତ-ବାର ବିବାହ କରିବେ । ଦେଶୀ ଶେଖର ଛାଜ ହେବେ ବଡ଼ ଯୁବରାଣୀ । ଅଙ୍ଗରାଣୀ ହେବେ ବିଶ୍ୱସ୍ତ ।

କଲସୁସି ସନ୍ନ୍ୟାସିମା । ସେ ଆଉ ବେଶୀ ବେଳ ସେଠାରେ କଟାଇବାକୁ ଋହିଁଲେନ । ସେ ନନାଙ୍କୁ ଏତକ କହି ବିଦାୟ ନେଲେ । ଯିବା ଆଗରୁ କ'ଣ କ'ଣ କରିବାକୁ ହେବ, ସବୁ ବତାଇ ଦେଇଥିଲେ ।

ରଜା ଡକାଇଲେ ସଡ଼େନ୍ ପାଁଜକ ।

ପାଁଜ ବାବାଙ୍କୁ ନମସ୍କାର ଜଣାଇଲେ ।

"ପାଁଜ,···ସବୁ କଥା ଜାଣିଲଣି ?"

"ବାବା !"

"ଏବେ ଉପାୟ ?"

"ମୋ' ପଣରେ ମୁଁ ସ୍ଥିର ଅଛୁ ।"

"ଲଢ଼େଇ ହେବ ।"

"ହେଉ, ମୋ' ଉପରେ ଭରସା ରଖନ୍ତୁ । ମୁଁ ଲଢ଼ିବି ।"

"ଲଢ଼େଇ ବନ୍ଦ କରିଦେବ ।"

"ସତେ ?"

"ଯଦି ତୁମେ ଦେଶୀ ଶେଖର ଛାଜଙ୍କି ବିବାହ କର ।"

"କ'ଣ କହୁଛନ୍ତି !"

"ହଁ, ସେ ହେବେ ବଡ଼ ଯୁବରାଣୀ···ଆଉ···।"

"ବାବା !" ପାଟିକରି ଉଠିଲେ ପାଁଜ । "ଏମିତି କହନ୍ତୁନ ବାବା ! ମୁଁ ଏ କଥାକୁ ମାନିପାରିବିନ ।"

"ତମର ପି'ସିମା ଆସିଥିଲେ ।"

"ଆସିଥିଲେ ? କ'ଣ କହିଲେ ?"

"ମୁଁ ଯାହା କହିଲି ।"

"ମୁଁ ସେଥିରେ ରାଜ ନୁହେଁ ।"

"ତେବେ, ତାଙ୍କର ପାଖକୁ ଯାଅ ।"

"ସେ କୋଉଠି ? ରାଜବ.ଟୀରେ ।"

"ନା··· ।"

"ତେବେ କୋଉଠି ?"

"କେପୁକଂଗନ ବଣରେ ।"

"ମୋତେ ସେଠାକୁ ଯିବାକୁ ପଡ଼ିବ ?"

"ନିଶ୍ଚୟ । ପିପିମାଙ୍କୁ କହିବ ମୋର କାମ ଅଛି, ଖୁବ୍ ଜରୁରୀ । ମଙ୍କେ ସଙ୍ଗେ ଆସିବେ । ତାଙ୍କର ପରାମର୍ଶ ଲୋଡ଼ା ।"

"ଠିକ୍ ଅଛି ବାବା ! ମୁଁ ଯିବି ।"

"ଏଇକ୍ଷଣି···ଏଇ ମୁହୂର୍ତ୍ତରେ··· ।"

"ଯୁବରାଣୀଙ୍କି କହିନ ।"

"ମୁଁ ତାଙ୍କୁ ଖବର ପଠାଇ ଦେବି ।"

"ବାବା !"

"ତୋ ବାବା··· ତୋ ରାଜା, ଏକଥା ମନେରଖ । ଏହା ଏକ ଆଦେଶ ।"

ରାଡ଼େନ ପାଁଜ ମୁଣ୍ଡ ନୁଆଇଁ ଦେଲେ । ସେ ମାନନେଲେ । ସଙ୍ଗେ ସଙ୍ଗେ ପିପିମାଙ୍କୁ ଦେଖା କରିବାକୁ ବାହାରିଗଲେ ।

୨

ରାଜା ଜାଙ୍ଗେଲା ଚଞ୍ଚଳ ହୋଇ ଉଠିଲେ । ସେ ତାଙ୍କର ବଡ଼ପୁଅକୁ ଡାକଲେ,

"ଯୁବରାଜ··· !"

"ବାବା !"

"ତମେ ମୋର ବଡ଼ପୁଅ ।"

"ଆଜ୍ଞା !"

"ତମେ ମୋ ମାନ ରଖିବ ?"

"ବାବା !"

"ବେଶ୍···ଶୁଣ । ପାଁଜକ ମୁଁ କଲସୁପି ପାଖକୁ ପଠାଇ ଦେଇଛି । ଏକଥା ଅଙ୍ଗରାଣୀ ଯେପରି··· ।

"ଜାଣନ୍ତି ନାହିଁ···, ଏଇସ୍ବା ତ ?"

"ବେଶ ! କିନ୍ତୁ କଥା ଏଡିକରେ ସରୁନି ।"

"ବୁଝିପାରିଲିନି··· !"

"ତମେ ଦେବୀ ଅଙ୍ଗରାଣୀଙ୍କ ଡାକ । କହିବ, ତମେ ପାଁଜର କଥା ଅନୁସାରେ ଏ କାମ କରୁଚ ।"

"ବାବା ! ଏ ମିଛକଥା । ମୁଁ କହିପାରିବିନି ।"

"ପରିବାରର ଭଲ ପାଇଁ କରିବାକୁ ହେବ । ଆଜି ନଅ···।" ରାଜା ଗୋଟାଏ ଖୋଲା ତଲୁଆର କାଢ଼ିଲେ ।

ସେ ତଲୁଆରଟାକୁ ବଢ଼ାଇ ଦେଲେ ଭୁମେଂଗଙ୍ଗ ବ୍ରଜନାଥଙ୍କୁ । କୁଣ୍ଠାର ସହିତ ବ୍ରଜନାଥ ସେ ତଲୁଆରଟି ଗ୍ରହଣ କଲେ । ରାଜାଙ୍କ ହାତରେ ରହିଲା ତଲୁଆରର ଖୋଳ ।

"ତଲୁଆର ଖୋଳ···?" ବ୍ରଜନାଥ ପ୍ରଶ୍ନ କଲେ ।

"ଯୁବରାଜ ବ୍ରଜନାଥଙ୍କୁ ବୁଝାଇ ଦେବାକୁ ପଡ଼ିବ ?"

"କହନ୍ତୁ ବାବା··· !"

"ଦେବୀ ଅଙ୍ଗରାଣୀ ଇଏ ତଲୁଆରର ଖୋଳ ।"

ଚମକିଗଲେ ଭୁମେଂଗଙ୍ଗ ବ୍ରଜନାଥ । ଆଶ୍ଚର୍ଯ୍ୟରେ ତାଙ୍କର କଣ୍ଠ ପ୍ରାୟ ରୁଦ୍ଧ ହୋଇଗଲା । ନିଜର ସାନଭାଇ ପାଁଜ, କେତେ ଭଲ ପାଆନ୍ତି ତାଙ୍କୁ । ବ୍ରଜନାଥ ସାନଭାଇର ସ୍ତ୍ରୀକୁ ମାରିବେ !!

ସେ ପଥର ପାଲଟିଗଲେ ।

ସେ କିଛି ସମୟ ମୂକ ହୋଇଗଲେ ।

ନା···ତାହାଙ୍କୁ ଏ କାମ କରିବାକୁ ହେବ । ଏ ଆଦେଶ ରାଜାଙ୍କର ।

**୩**

ଯୁବରାଜ ବ୍ରଜନାଥ ଦେବୀ ଅଙ୍ଗରାଣୀଙ୍କ ପାଖରେ ପହଞ୍ଚିଲେ । କହିଲେ, "ରାଜା ପାଁଜକୁ ପଠାଇଛନ୍ତି କୁଆଲା କମଳକୁ । ସେଇଠି ସେ ରହିବେ ଅନେକ ଦିନ ।"

ଦେବୀ ଅଙ୍ଗରାଣୀ ଆଶ୍ଚର୍ଯ୍ୟ ହୋଇ ଭାବିଲେ ପାଁଜ ଗଲେ କେମିତି ! ତାଙ୍କୁ କିଛି ତ ଜଣାଇ ନାହାନ୍ତି !

"ସେ ମୋତେ କହୁଛୁ କହୁ ନାହାନ୍ତି ଯେ··· !"

"ସମସ୍ତ ନ ଥିଲ । ଜରୁରୀ କାମରେ ସେ ଯାଇଚନ୍ତି । ମୋତେ କହିଚନ୍ତି ।"

"କ···ଣ··· ?"

"ତମେ ସେଠିକି ଯିବ ।"

"ମୁଁ ? ଏକା ?"

"ମୁଁ ଯିବି ସାଥିରେ ।"

ଦେବୀ ଅଙ୍ଗରାଣୀଙ୍କ ମୁହଁ ଶୁଖିଗଲା । ତାଙ୍କ ମନରେ ଉଙ୍କି ମାରିଲା ସନ୍ଦେହର ଅନେକ ମୁହଁ । ଏମିତିକି ଅଙ୍ଗରାଣୀଙ୍କ ସହଚରୀଟିଏ ଏ ସମ୍ବାଦକୁ ସରଳଭାବରେ ଦେଖିପାରିଲାନି । ନିଶ୍ଚୟ ଏଥି' ଭିତରେ କିଛି ଗୋଟାଏ ଷଡ଼ଯନ୍ତ୍ର ରହିଚି ।

ମାତ୍ର ଏ ଯେ ରାଜାଙ୍କର ଆଦେଶ । ଏ ଇଚ୍ଛା, ଏ ଆଦେଶ ବିରୁଦ୍ଧରେ ଯିବ କିଏ ? ଦେବୀ ଅଙ୍ଗରାଣୀ ଓ ତାଙ୍କର ସହଚରୀ ତେଣୁ ଯିବାକୁ ବାହାରିଲେ ।

ସେମାନେ ପହଞ୍ଚିଲେ ଏକ ଅଗନାଅଗନ ବନସ୍ତରେ । ଏଇଠି ପାଖଆଖରେ କେହି ନାହିଁ । ଯୁବରାଜ ଗ୍ରଜନାଟ କହିଲେ, "ଦେବୀ ଅଙ୍ଗରାଣୀ !"

"କହନ୍ତୁ ଜ୍ୟେଷ୍ଠ !"

"ମୋ' ହାତରେ ଏ ଖୋଲା ଛୁରୀଆରକୁ ଦେଖୁଚ ?"

"ଦେଖୁଚି ତ ।"

"ଏହାର ଗୋଟାଏ ଖୋଳ ଦରକାର ।"

ଉଭୟେ ଅଙ୍ଗରାଣୀ ଓ ତାଙ୍କର ସହଚରୀ ଚମକି ଉଠିଲେ ।

ଦେବୀ ଅଙ୍ଗରାଣୀ କହିଲେ,

"ଖୋଲା ଛୁରୀଆର ଆଣିଚ ନନା ହେ,
ଖୋଳଟିଏ ତା'ର ଲୋଡ଼ା;
ମୋହରି ଦେହର ଚମଡ଼ାକୁ ନେଇ
ଖୋଳ ହେବ ତା'ର ଗଢ଼ା ।

କସ କସ ମୋର ଦୋଷ ?
ମୋ'ର ରୁଧିର ପିଇଲେ ମରବ
ତଲୁଆର ରାଜ ଶୋଷ ?"

ବ୍ରଜନାଥ ଦେବୀ ଅଙ୍ଗରାଣୀଙ୍କ ଆଡ଼କୁ ଚ୍ଛିହିଁ ପାରଲେନ । ସେ ଅଙ୍ଗରାଣୀଙ୍କି ବହୁ ଶରଧା କରୁଥିଲେ । କହଲେ ସେ, "ତୁମର କନ୍ଥୁ ଦୋଷନାଇଁ ଭଉଣୀ ! ଦୋଷୀ ପାଁଜ । ସେ କେଦ୍‌ର ରାଜାଙ୍କ ଝିଅକୁ ବାହା ହେଲେନ କଆଁ ?"

ଦେବୀ ଅଙ୍ଗରାଣୀ ହାତ ବଢ଼ାଇଲେ ।

"ମୁଁ ବ କ୍ଷତ୍ରିୟ । ମରଣକୁ ମୋ'ର ଡର ନାଇଁ । ନନା, ଆପଣଙ୍କୁ କଷ୍ଟ କରବାକୁ ହେବନ । ମୋ ସ୍ୱାମୀଙ୍କ ଇଜ୍ଜତ ଲଗି ମୁଁ ନଜକୁ ବଳ ଦେଇ ଜାଣେ ।"

ଯୁବରାଜ ବ୍ରଜନାଥଙ୍କ ହାତରୁ ତଲୁଆର ନେଲେ ଦେବୀ ଅଙ୍ଗରାଣୀ ।

ପର୍ ! ଦେବୀ ଅଙ୍ଗରାଣୀ ନଜର ଛାତରେ ଭୁଷିଦେଲେ ତଲୁଆରକୁ ।

ପିର୍ ! ପିର୍... ! ପିର୍... !!! ରକ୍ତର ଧାର ଛୁଟିକା ପଡ଼ଲା ।

ଦେବୀ ଅଙ୍ଗରାଣୀ ତଳ ପଡ଼ଲେ ମାଟି ଉପରେ । କେତେ ସମୟ ଭିତରେ ତାଙ୍କର ସୁନ୍ଦର ଦେହଟି ଥିର ହୋଇଗଲା !

"ମୁଁ ଆଉ ବଞ୍ଚିବ କାହାଲଗ ?" ଭାବଲା ସନ୍ଧ୍ୟାତାରାଟି । ସେ ବ ଦେବୀ ଅଙ୍ଗରାଣୀଙ୍କର ବାଟ ଅନୁସରଲା !

ମୂକ ପାଲଟିଗଲେ ଯୁବରାଜ ବ୍ରଜନାଥ । ତାଙ୍କର ଆଖି ଆଗରେ ଦୁଇ ଦୁଇଟି ଜୀବନ ଏମିତି କରୁଣ ଭାବରେ ଶେଷ ହୋଇଗଲା ।

ଭୁମେଂଗଙ୍ଗ ବ୍ରଜନାଥ ଦେଖିଲେ ଆଉ ଆଗକୁ ଯିବାର କନ୍ଥୁ କାରଣ ନାଇଁ । ଏହା ହିଁ ଥିଲା ରାଜାଙ୍କର ଇଚ୍ଛା । ସେ ଇଚ୍ଛା ପୂରଣ ହେଇଚ । ଏଥର ସେ ରାଜାଙ୍କ ପାଖକୁ ଫେରବେ । କହିବ ତାଙ୍କୁ ସକଳ ସମାଚ୍ଛର ।

ସେ ଚଞ୍ଚଳ ଚଞ୍ଚଳ ପାଦପକାଇ ଫେରିଲେ ଉଆସକୁ । ତା' ଆଗରୁ ଶବ ଦୁଇଟିକ ସେ ଘୋଡ଼ାଇ ଦେଲେ ଅଶୋକ ଡାଳ ଓ ପତ୍ରରେ ।

୪

କୁମାର ଫାଁଜ ସିଦା ପିଉସୀମା'ଙ୍କ ପାଖକୁ ଗଲେ, ତାଙ୍କ ମନରେ ଶାନ୍ତି ନ ଥାଏ । ରଜାଙ୍କ ହାତରେ ଶିକାର ହେବେନ ତ ଦେୱୀ ଅଙ୍ଗରାଣୀ ! ତେଣୁ ସେଠି ବେଶି କାମ ସାରିବା ଦରକାର ।

ପିଉସୀ କଲସୁମିଙ୍କ ସଙ୍ଗରେ ଧରି ସେ ଫେରିଆସିଲେ ରାଜଧାନୀକି । ପିଉସୀଙ୍କି ବାବାଙ୍କ ପାଖରେ ଛାଡ଼ିଦେଇ ସେ ଧାଇଁଲେ ଘରକୁ ।

ଶୂନ୍‌ଶାନ୍ ଘର । କେହି କ'ଣ ନାହାନ୍ତି ଏଠି ! ରାଡ଼େନ ଫାଁଜ ଦୁଆର ମୁହଁରୁ ଦେୱୀ ଅଙ୍ଗରାଣୀଙ୍କି ଡାକ ଉଠିଲେ । କିନ୍ତୁ କିଛି ଜବାବ୍ ପାଇଲେନ । ସେ ଅଛନ୍ତି ଯେ ଜବାବ୍ ଦେବେ ! ଆଉ କାହିଁ ତାଙ୍କ ସହଚରୀ ? ସେ ବି ସେଠି ନାହିଁ !

ତାଙ୍କ ଭଉଣୀ ଦେୱୀ ଉନେଙ୍ଗନଙ୍କ ସହିତ ଦେଖା ହେଲା । ସେ କହିଲେ, କମିତି ରାଜା ଆଦେଶ ଦେଲେ । ଆଉ ଯୁବରାଜ ଗୁଜନଟି ହତ୍ୟାକଲେ ଦେୱୀ ଅଙ୍ଗରାଣୀଙ୍କ ।

ରାଡ଼େନ ଫାଁଜ ଏ ଧକ୍କା ସମ୍ଭାଳି ପାରିଲେନ । ଯେଉଁ ଅଙ୍ଗରାଣୀଙ୍କ ଲାଗି ଏତେ କଥା, ସେ ଆଜି ନାହାନ୍ତି । ତାଙ୍କୁ ଦଶଦିଗ ଅନ୍ଧାର ଦିଶିଲା । ସେ ସେଇ ଜାଗାରେ ଇ ଚେତା ହରାଇ ପଡ଼ିଗଲେ ।

ଦୁଇଦିନଯାଏ ସେମିତି ପଡ଼ିରହିଲେ । ଖିଆପିଆ କିଛି ନାହିଁ । ସେ କାନ୍ଦୁଥାଆନ୍ତି । ଦୁଇଆଖିରୁ ଖାଲି ଲୁହଧାର ବହିଯାଉଚି ।

ଦୁଇଦିନ ପରେ ସେ ଆଖି ଖୋଲିଲେ । ହେଲେ, ତାଙ୍କ କଥାର ବାଗବଣି ବଦଳିଲା । ସେ କଅଣ କହୁଥିଲେ···କଅଣ କରୁଥିଲେ, ନିଜେ ଜାଣିପାରୁ ନ ଥିଲେ । ଏକରକମ ପାଗଳ ।

ସେ ଉଆସର କୋଣରୁ କୋଣକୁ ଘୂରିବୁଲିଲେ । ଦେବୀ ଅଙ୍ଗରାଣୀଙ୍କ ନାଁ ଧରି ପାଟିକରି ଡାକିଲେ । ସେ ଯୋଉ ଜିନିଷ ବ୍ୟବହାର କରୁଥିଲେ, ସେହି ଜିନିଷ ସବୁକୁ ସେ କୁଣ୍ଢାଇ ଧରୁଥିଲେ । ସେମାନଙ୍କୁ ପଚାରୁଥିଲେ, "କୁହ…କୁହ…ମୋର ଅଙ୍ଗରାଣୀ କାହିଁ ?" ସେ ପଥରକୁ ପଚାରିଲେ । ଖାଲି ଖଣା ଦେଖିଲେ, କାଳେ ଅଙ୍ଗରାଣୀଙ୍କି ପାଇବେ ! କାଳେ ସେ ଭିତରେ ଲୁଚି ରହିଥିବେ ! ସେ ଧାନକ୍ଷେତକୁ ଗଲେ । ଗଲେ ବଗିଚାକୁ । ହେଲେ, ସବୁଠି ଶୂନ୍‌ଶାନ୍ । କୋଉଠି ହେଲେ ଅଙ୍ଗରାଣୀଙ୍କ ଦେଖାଦର୍ଶନ ମିଳିଲାନି ।

ତାଙ୍କର ଏଇ ଦୁଃଖବେଳେ, ଗଡ଼ଜେନ ପାଁଜଙ୍କ ପାଖରେ କେହି ନ ଥିଲେ । କେବଳ ବୁଢ଼ା ମନ୍ତ୍ରୀ ଥାଆନ୍ତି । ସିଏ ତାଙ୍କୁ ସାନ୍ତ୍ୱନା ଦେଉ ଥାଆନ୍ତି । ବୁଝାଇ ଚାଲିଥାଆନ୍ତି ।

ପାଁଜ ରଙ୍ଗଫୁଲ ପାଖକୁ ଯାଉଥିଲେ । ଫୁଲକୁ ସୁଆଁ‌ଜୁ ଥିଲେ । କହୁଥିଲେ—

"ଫୁଲରାଣୀ, ଫୁଲରାଣୀ,
କହିବ କି କେଣେ ଗଲେ
ମୋର ଦେବୀ ଅଙ୍ଗରାଣୀ ?"
ବୁଢ଼ାମନ୍ତ୍ରୀ ସଙ୍ଗେ ସଙ୍ଗେ ଉତ୍ତର ଦେଉଥିଲେ,
"ସେଇ ପରା ଅଙ୍ଗରାଣୀ !"

ପାଁଜ ଫୁଲଗୁଡ଼ିକୁ କୁଣ୍ଢାଇ ପକାଉଥିଲେ । ସେମାନଙ୍କୁ ନିଜର ବୁକୁରେ ଚିପିଧରୁଥିଲେ । ଆଃ… ! ଏଇ ଫୁଲ ଭିତରେ ଅଙ୍ଗରାଣୀ ଲୁଚିଗଲେ କିପରି ! ସିଏ ଆଉ ମଣିଷ ହେବେନି ! ସିଏ ଆଉ କୁମାର ପାଁଜଙ୍କ ପାଖକୁ ଆସିବେନି !

ହେଲେ, ଅଙ୍ଗରାଣୀଙ୍କି ମାଡିଲେନି ପାଁଜ । ସେଦିନ ହଠାତ୍ କହିଲେ, "ମନ୍ତ୍ରୀ, ଆପଣ ମୋତେ ଠକିଦେଲେ । ଅଙ୍ଗରାଣୀ ଫୁଲମାନଙ୍କ ଭିତରେ ନାହାନ୍ତି । ସିଏ ବୋଧହୁଏ ବଣରେ ଲୁଚିଛନ୍ତି । ଚାଲ ଯିବା ବଣକୁ । ଖୋଜିବା ସେ ଜଣକୁ ।"

କହିବା ସଙ୍ଗେ ସଙ୍ଗେ ସେ ବାହାରିଗଲେ ବଣ ଆଡ଼କୁ । ମନ୍ତ୍ରୀ ବି ଚାଲିଲେ ସାଥିରେ । ଆହା, ଏ ରଜାପୁଅ ଆଉ ବଞ୍ଚିବେନି ବୋଧହୁଏ !

ବଣରେ ବୁଲିଗଲେ ପାଁଜି, ଅଙ୍ଗରାଣୀଙ୍କ ନାଁ ଧରି ଡାକୁଥାଆନ୍ତି । କେତେବେଳେ ବଣରୁ ଶୁଭେ ତାଙ୍କ ଡାକର ପ୍ରତିଧ୍ୱନି । ପ୍ରତିଧ୍ୱନି ଆଡ଼କୁ ଯାଆନ୍ତି । ଲୁଚିଛନ୍ତି କି ଆଉ କୋଉ ଗଛଲତାର ଆଡ଼ୁଆଳରେ ! ହେଲେ, ସେଇ ଏକା କଥା ! ଅଙ୍ଗରାଣୀଙ୍କ ଭେଟ ମିଳେନି ।

ଏମିତି ବୁଲୁଥାଆନ୍ତି । ଆସି ପହଞ୍ଚିଲେ କୁଆଁଳିଆ କମଳରେ । ସେଠି ଦେଖିଲେ ଗୋଟେ ଜାଗାରେ ଜମା ହୋଇଛି ଅଶୋକ ଡାଳପତ୍ର ।

ପାଗଳ ପରି ପାଁଜି ଫିଙ୍ଗିଦେଲେ ସେ ଡାଳପତ୍ରକୁ ।

ଆଃ ! ଏଇଠି ଶୋଇରହିଛନ୍ତି ତାଙ୍କର ଅନ୍ତରର ଆଦରର ଅଙ୍ଗ-ରାଣୀ ! ଦେହର ରଙ୍ଗ ମଳିନ ଚନ୍ଦନ । ମୁହଁରେ ଝଟକୁଛି ଲାବଣ୍ୟ !

କୁଣ୍ଢାଇ ପକାଇଲେ ପାଁଜି ସେଇ ଶବକୁ । ସେଇ ଶବକୁ ଧରି ବାହୁନିଲେ । ଉଠାଇଲେ । ହେଲେ, କାହିଁ ଦେବୀ ଅଙ୍ଗରାଣୀ କିଛି କହୁନାହାନ୍ତି ଯେ !

ରାଡେନ୍ ପାଁଜି କହିଲେ,

"ଅଙ୍ଗରାଣୀ ମୋ'ର ବଡ଼ ସୋହାଗିନୀ,

ଅଭିମାନ ଅଛି କରି

ଚାଲି ନେଇଯିବା ନିଜକୁ ଉପରେ

ବାହିନେବା ଦୂରେ ତରୀ ।"

ଅଙ୍ଗରାଣୀଙ୍କ ସହଚରୀ ବି ସେଇଠି ପଡ଼ିଥିଲା । ସେ ଦେହରେ ବି ଥିଲା ସେଇ ଜ୍ୟୋତି ।

ମନ୍ତ୍ରୀ ଓ ରାଡେନ ପାଁଜି ତିଆରିଲେ ଦୁଇଟି ସୁନ୍ଦର ନାଆ । ଗୋଟିଏ ନାଆରେ ରାଡେନ ପାଁଜି ଓ ଅଙ୍ଗରାଣୀ । ଆଉ ଗୋଟିଏ ନାଆରେ ମନ୍ତ୍ରୀ ଓ ଅଙ୍ଗରାଣୀଙ୍କ ସହଚରୀ ।

ସେମାନେ ପାଖ ନଈରେ ମେଲିଦେଲେ ନାଆ । ଦୁଇଟି ନାଆ ଚାଲିଥାଏ । ଗୋଟିଏ ଆଗରେ, ଆରଟି ପଛରେ । ଆଗରେ ଯାଉଥାଆନ୍ତି ରାଡେନ ପାଁଜି । ସେ କରୁଣ ସ୍ୱରରେ ଦେବୀ ଅଙ୍ଗରାଣୀଙ୍କୁ ବାହୁନି ଗୀତ ଗାଉଥାଆନ୍ତି ।

ଏମିତି କଟିଗଲା ଦିନ ପରେ ଦିନ···ଅନେକ ଦିନ । ଦିନେ ଆକାଶରେ ଉଠିଥାଏ ପୂର୍ଣ୍ଣଚନ୍ଦ୍ର । ହଠାତ୍ ରାଜେନ ପାଁଜଙ୍କ କୋଳରେ ଦେଖା ଅଙ୍ଗରାଣୀଙ୍କ ଶବ ହଲଚଲ ହେଲା ଓ ଆଖିପିଛୁଳାକେ ଅଙ୍ଗରାଣୀ ଉଠିବସିଲେ । ତା'ପରେ ସେ ଉଡିଗଲେ । ଉଡିଯାଇ ଉପର ଚନ୍ଦ୍ରରେ ମିଶିଗଲେ ।

ରାଜେନ ପାଁଜ ଅବାକ୍ ହୋଇ ଚନ୍ଦ୍ରକୁ ଚାହିଁ ଥାଆନ୍ତି । ଶୂନ୍ୟରେ ଶୁଭିଲା,

"ଏ ଜୀବନ ଖେଳାଖେଳା ସବୁ ଗଳ୍ପ ସତ,
ଆଉ ଏକ ରୂପ ନେଇ ଆସିବି ମୁଁ ଫେର ।"

ରାଜେନ ପାଁଜ ଚିତ୍କାର କରି ଉଠିଲେ, "ଆଃ ! ତୁମେ ଯେ ଚନ୍ଦ୍ରକିରଣ ! ମୋ'ର ଚନ୍ଦ୍ରକିରଣ !"

ରାଜେନ ପାଁଜ ମୂର୍ଚ୍ଛିତ ହୋଇ ପଡ଼ିଗଲେ ।

ଅଙ୍ଗରାଣୀଙ୍କ ହାସୀଟି ବି ମିଶିଗଲା ଆକାଶରେ ।

ଆଉ ଆକାଶ ହଠାତ୍ ଅନ୍ଧକାରରେ ଭରିଗଲା । ଦିଗ୍‌ବଳୟୁ ଆଉ଼ ଜୋର୍‌ରେ ବହିଆସିଲା ବତାସ । ଭୟଙ୍କର ତୋଫାନରେ ସାରା ପୃଥିବୀ ଦୋହଲି ଉଠିଲା ।

# ଚନ୍ଦ୍ର କିରଣ

## ୧

କେଦାର ରାଜ୍ୟରେ ବଡ଼ ବତାସଟାଏ ହେଲା । ଏ ନାଇଁ ନ ଥିବା ଝଡ଼ବତାସ । କେତେ ଗଛଲତା ଉପୁଡ଼ିଗଲା । ଭାଙ୍ଗିଗଲା କେତେ ଘର । ମଣିଷମାନଙ୍କୁ ଉଡ଼ାଇ ନେଲା । କାହାର କ'ଣ ହେଲା, କେହି ଜାଣି ପାରିଲାନି । କିଏ କୁଆଡ଼େ ଉଡ଼ିଗଲା ଜଣାଗଲାନି ।

ସେଇ ତୋଫାନ ଗୋଟା ରାଇଜକୁ ଛିନ୍ନଛତର କରିଦେଲା । ରାଜାଘର ଉଆସ ଭାଙ୍ଗିଗଲା । ଲୋକବାକ ହଜିଗଲେ । ସବୁ ସାରିଦେଲା ଏ ତୋଫାନ ।

ସେଇ ତୋଫାନରେ ପଡ଼ିଗଲେ ଦେବୀ ଶେଖର ତାଜ । ସେ କେଦାର ରାଜାଙ୍କ ଝିଅ । ପବନ ତାଙ୍କୁ ଟେକି ଉଡ଼ାଇ ନେଲା । ସେ ହାତଗୋଡ଼ ଛାଟିଲେ । କୋଉଠି ଆଶ୍ରା ପାଇ ଅଟକି ଯାଆନ୍ତେ କି ! ସେମିତି କିଛି ହେଲାନି । ସେ ଉଡ଼ୁଥାଆନ୍ତି । ସତେ ଯେମିତି ଫୁଲର ପାଖୁଡ଼ାଟିଏ !

ଏଇ ଗଲା ଘର । ପାରିହେଲେ ନଅର । ତଳେ ଗୁଡ଼ାଏ ଧାନବିଲ । ନା···ନା. ଧାନବିଲ ଆଉ ନାଇଁ । ଏ ଯେ ବଣ ! ପବନର ମାଡ଼ରେ ତାଙ୍କର ଆଖି ବୁଜି ହୋଇଗଲା । ତାଙ୍କ ଦେହ ଅବଶ ହେଲା । ସେ ଚେତନାଶୂନ୍ୟ ହେଲେ ।

ଚେତା ପାଇ ଉଠିଲେ ଦେବୀ ଶେଖର ରାଜା । କୋଉଠି ସେ ? ଏ କୋଉ ଜାଗା ? ସେ କିଛି ଜାଣିପାରୁ ନାହାନ୍ତି । ତାଙ୍କ ମୁଣ୍ଡ ଝାଇଁ ଝାଇଁ କରୁଛି । ଖାଲି ଅଳପ ଅଳପ ମନେ ପଡୁଛି, ପବନଟାଏ ଆସିଲା, ଖଣ୍ଡେ ଶୁଖିଲା ପତ୍ରପରି ସେ ଉଡ଼ିଲେ । ତା'ପରେ କ'ଣ ହେଲା ମନେ ପଡ଼ୁନି ।

ଦେବୀ ଶେଖର ରାଜା ଚାରିଆଡ଼କୁ ଅନାଇଲେ । ପାଖରେ···ଖୁବ୍ ପାଖରେ ଗୋଟେ ପୋଖରୀ । ତା'ର କୂଳରେ ସେ ପଡ଼ିଛନ୍ତି । ଦେହ କାଦୁଅ ଲଟପଟ । ଗଛଡ଼ୁଛି ଦେହ । କମନ୍ଦାର ବାଳବରଣ ନାହିଁ । ଶହେ ଜାଗାରେ ଛୁଡ଼ି ଯାଇଛି, ଫଟି ଯାଇଛି । ବହୁ କଦର୍ଯ୍ୟ ଦିଶୁଛି ସବୁ । ସିଏ ଯେ ଜଣେ ରଜାଟିଏ, ଏ କଥା କେହି ଭୁଲରେ ବି କହିବେନି ।

ଦେବୀ ଶେଖର ରାଜା ଧୀରେ ସଚେତନ ହେଲେ । ସେ ଜାଣିଲେ, ଏ ଜାଗା ତାଙ୍କର ଶଦ୍ଧା ମନଶତ ଜାଗାଠୁ ଅନେକ ଦୂର । ସେ ଏବେ ଅଜଣା ବନଗୁଡ଼ିକ କାହିଁକି ଅଜଣା ଜାଗାରେ । ଏଠି ଅଜଣା ଲୋକବାକ । ଜୀବନଟା ତ ଏମିତି, ଦେଖାଯାଉ କ'ଣ ହେଉଛି ।

ସେ ଉଠି ଗୋଡ଼ ଘୋଷାରି ଘୋଷାରି ଗଲେ । ଆଗରେ ଦିଶୁଛି ଖଣ୍ଡେ ଗାଁ । ସେ ଗାଁଆକୁ ଯିବେ । ସେଠି ଲୋକଙ୍କ ସାହାଯ୍ୟ ମାଗିବେ । ସେ ବଞ୍ଚିଯାଇଛନ୍ତି, ତେଣୁ ବଞ୍ଚିବାର ଚେଷ୍ଟା କରିବେ ।

ଗାଆଁରେ ପହଞ୍ଚିଲେ ଗୋଟାଏ ବଡ଼ିଆ ଘରେ । ସେ ଘର ଗୋଟିଏ ଖାନଦାନ ଘର । ଘରର ମାଲିକ ଅନେକ ଆଗରୁ ମରି-ଯାଇଥାଆନ୍ତି । ଘରେ ରହିଥାଏ ବିଧବାଟିଏ । ତା'ର ନ'ଟି ଝିଅ । ଏ ନ'ଟି ଝିଅ କ୍ରମରେ ଏକ ଆରେକ ସୁନ୍ଦର । ସେମାନଙ୍କ ନାଁ ବି ସେମିତି ସୁନ୍ଦର । ସେ ଦେଶର ଭାଷାରେ କହନ୍ତି, ହେଉଛି ଆମ ଭାଷାରେ । ସେମାନଙ୍କୁ ଲୋକେ ଡାକୁଥିଲେ ନାଲି କଳସୀ, ସବୁଜ କଳସୀ, ନୀଳ କଳସୀ, ମଗ୍ କଳସୀ, କୃଷ୍ଣ କଳସୀ, ଧୂମ କଳସୀ ।

ଏ କଳସୀ କନ୍ୟାମାନେ ରୂପଗୁଣରେ ସମସ୍ତଙ୍କୁ ଜିଣି ଯାଇଥିଲେ । ସମସ୍ତଙ୍କୁ କିଣି ନେଇଥିଲେ । ଯିଏ ସେମାନଙ୍କୁ ଥରେ ଚାହୁଁଥିଲା ସେମାନଙ୍କର ନଫର ହେଉଥିଲା । ସତେ ଯେମିତି ସେମାନେ ଥିଲେ ମୋହମାକନ୍ୟା ।

ବୁଢ଼ୀର ପାଖରେ ଦେଖାଦେଲେ ଦେଵୀ ଶେଖର ତାଙ୍କ । ବୁଢ଼ୀ ଭାବଲା, କୋଉଠୁ ଭିକାରୁଣୀ ଗୋଟାଏ ଆଇଲା ରେ ! ଇଏ ଏ ଲଗେ ମାଗିବ । ତେଣୁ ସେ ପଚାରିଲେ ପାଟିକରି ଉଠିଲା, "ଯାଗ୍ ଏଠୁ ! ଭିକ ମିଳିବନି । ଦନ୍ତ ଦାନ୍ତ ତ ବେଶ୍ ଗୋଲଗାଲ । କାମ କରୁନୁ ? ବେଶ୍ ପଇସା ପାଇବୁ, ଭଲ ଖାଇବୁ । ଏମନ୍ତ ମାଗୁଚୁ କଅାଁ ! ମୋ' ଘରେ କାମ କର ?"

ରାଜକୁମାରୀ ରାଜି ହେଲେ ।

ବୁଢ଼ୀ ତାଙ୍କୁ ଦେଲା ଲୁଗାପଟା । କହିଲା, "ବେଗି ପୋଛଣ କ ଯା', ଗାଧୋଇ ପଡ଼ ।"

କାଦୁଅ ମାଟିଅ ଧୋଇ ଧାଇ ଗାଧୋଇ ପଡ଼ିଲେ ଦେଵୀ ଶେଖର । ଲୁଗାପଟା ପିନ୍ଧି ଆସିଲେ ବୁଢ଼ୀର ଘରକୁ ।

ବୁଢ଼ୀର ଆଖି ଖୋସି ହୋଇଗଲା । ବାଃ ! ଏ କ ରୂପ ! ଭିକାରୁଣୀର ରୂପ ତ ଏ ନୁହେଁ ! ତା ଝିଅମାନେ କୋଉ ଗୁଣରେ ତା'ଠୁ ଭଲ ? କୋଉ ଗୁଣରେ ତା'ଠ ସୁନ୍ଦର ? ମଇଳା ଅସନା ତଳେ ଲୁଚିଥିଲା ଚମ୍ପାଫୁଲିଆ ରଙ୍ଗ ! ବୁଢ଼ୀ କହିଲା,

"ଦାସୀ ଲୋ ଦାସୀ,
ଦନ୍ତ ରଙ୍ଗ ତୋ'ର ଦାଉ ଦାଉ ଜଳେ
ନାଆଁଟି ତୋହର ସୁନା-କଳସୀ ।"

ଦେଵୀ ଶେଖର କହିଲେ,
"ହଉ ମାଉସୀ !
ମୁଁ ସୁନା କଳସୀ ! !"
ସେ ଦେଲେ ହସି ।

ସେଇଠି ରହିଲେ ସେ । ସେ ଘରର ଦାସୀ । ବୁଢ଼ୀର ଝିଅମାନେ ଶାଢ଼ୀ ବୁଣନ୍ତି । ରଙ୍ଗବେରଙ୍ଗର ସୁନ୍ଦର କେତେ ସୁନ୍ଦର ସୁନ୍ଦର ବଟିକ ଶାଢ଼ୀ । ସେମାନେ ଗୀତ ଗାଆନ୍ତି, ନାଚନ୍ତି, ମନ ମଉଜରେ ଦିନ କଟାନ୍ତି । ମାତ୍ର ରାଜାଝିଅ 'ଅଳିଆ ଆବର୍ଜନା ଭିତରେ କାମ କରନ୍ତି । ରୋଷାଇ କରନ୍ତି । ସବୁବେଳ ଜଳା ମଇଳା ଲୁଗାପଟା, ମଇଳା ଦେହ ।

ବଡ କଷ୍ଟ ହୁଏ ରାଜଜେମାଙ୍କୁ । ହେଲେ, ସବୁ ସହି ପଡ଼ିଥାଆନ୍ତି । କେମିତି ଏଠୁ ମୁକ୍ତି ମିଳିବ ? କେଉଁଠି ତାଙ୍କର ବାବା ମା' ? କେଉଁଠି ରହିଲା ତାଙ୍କର ମୂଲକ ? ଧନରତ୍ନ ସେ ପ୍ରଭୁଙ୍କୁ ଜଣାଉ ଥାଆନ୍ତି । ଦୁଃଖ ତାଙ୍କର ଦୂର କରିବେ ଦୁଃଖହାରୀ ।

ସେଇ ତୋଫାନରୁ ଉତ୍ତର ପାଇଥିଲେ ତାଙ୍କର ବାପା । ତୋଫାନ ପରେ ଦେଖାଗଲା, ମୂଲକର ବହୁତ ହାନି ହୋଇଛି । ବହୁତ ଲୋକବାକ ମରିଛନ୍ତି । ରଜାଘର ବି ଅବସ୍ଥା ବଡ଼ ଖରାପ । ଆଉ ଜେମା ନାହାନ୍ତି । ରଜାଘର ଉପର ଗୃହଆଡ଼କୁ ଗଲେ । କେଉଁଠି ହେଲେ ଜେମାଙ୍କର ଦେହ ଅନ୍ତ ମିଳିଲାନି । ରଜା ମୁଣ୍ଡକାନ ଆଉଁସି ରହିଲେ ।

୨

ତୋଫାନ ମଧ୍ୟ ଆସିଥିଲା ସ୍ୱଡ଼େନ ପାଁଜଙ୍କ ନାଆକୁ । ସେଇ ତୋଫାନରେ ନାଆଟା ବାଉଳି ହୋଇଗଲା ଜଳରେ । ଛନ୍ଦିକି ପଡ଼ିଲେ ସ୍ୱଡ଼େନ ପାଁଜ ।

ତୋଫାନ ଆସିଲା···ଗଲା !

ସ୍ୱଡ଼େନ ପାଁଜ ଉଠିଲେ···ବୁଲିଲେ !

ବୁଲିଲେ, ମାନେ ଖୋଜି ବୁଲିଲେ ତାଙ୍କର ଚନ୍ଦ୍ରକରଣକୁ । ସ୍ୱଡ଼େନଙ୍କ ସଙ୍ଗରେ ଥିଲେ ସେଇ ମନ୍ତ୍ରୀ ଆଉ ଦୁଇଜଣ ସାଥୀ ।

ସେମାନେ ବି ଯାଉ ଯାଉ ଆଉ ଗୋଟେ ଗାଁରେ ପହଞ୍ଚିଲେ । ଏଠି ସେ ଗାଁରେ ପହଁଚୁ ପହଁଚୁ ଦେଖିଲେ, ବୁଢ଼ୀଟିଏ ବସିଛି ଦୁଆର ମାଡ଼ିଁ । ମନରେ କେମିତି ତା'ର ଦୁଃଖର ଗୁଇ ।

ବୁଢ଼ୀଟି ଏକା । ଜମିଜମା ବହୁତ । ହେଲେ, ଏସବୁ ଦେଖାଦେଖି କରିବ କିଏ ? ଷେତ ଖମାରକୁ ଯିବ କିଏ ? ସିଏ ଭାବୁଥିଲା, ତ' ଜମିବାଡ଼ ସବୁ ଗଲା···ସବୁ ନଷ୍ଟ ହେଲା । ମୁହଁ କୁହୁଣ୍ଡାଇ ସେ କପାଳକୁ ନିନ୍ଦୁଥାଏ ।

ପାଁଜ ସେଇଠି ପହଞ୍ଚିଲେ । ସାଙ୍ଗମାନେ ଅଛନ୍ତି । କହିଲେ,

"ମାଉସୀ, ମାଉସୀ···ବୁଢ଼ୀ ମାଉସୀ,

ଏଇଠି ଟିକଏ ପାରିବୁ ବସି ?

ବୁଲି ବୁଲି ଆମେ ହେଲୁଣି ଥକା

ଆଶ୍ରା ଦେବକି ଜନଟି ଏକା ?"

ବୁଢ଼ୀର ଧ୍ୟାନ ଗଲା ଭାଙ୍ଗି । ସେ ଉଙ୍କି ଦେଖିଲା, ଭଲ ସୁନ୍ଦରିଆ ପିଲାଟିଏ, ବଡଘରର ପୁଅପରି ଦିଶୁଚି । ଆଉ ତା ସାଙ୍ଗରେ ବି ଅଛନ୍ତି ଆଉ କେତେଜଣ । ପଚାରିଲା, "କୋଉଠୁ ଆସିଲ କି ପୁଅ ?"

"ତୋମାନରେ ଘର ଦୁଆର ସବୁ ଗଲା ଯେ ଆମେ କାମ ଖୋଜୁଚୁ···ମାଉସୀ !" ଗନ୍ଦେନ କହିଲେ ।

ବୁଢ଼ୀର ଆଖିରେ ଜାଗିଗଲା ତା' କ୍ଷେତବାଡ଼ିର ଦୃଶ୍ୟ । ଆଃ ! ମନ ଜାଣି ପ୍ରଭୁ ଦେଲେ, ତା'ର ଆଉ ଚିନ୍ତା କରିବା ଉଚିତ ନୁହେଁ ।

"ଚାଷ କାମ ପାରିବ କି ?"

ଗନ୍ଦେନଙ୍କ ସାଙ୍ଗମାନେ କହି ଉଠିଲେ, "ପରୁଆ ନାହିଁ । ସବୁ ପ୍ରକାର କାମ ଆମେ କରିପାରିବୁ ।"

ବୁଢ଼ୀ ତ ମହାଖୁସି । ସେମାନଙ୍କୁ ସେ ଡାକନେଲା ଘରକୁ । ଖାଇବା ପିଇବାକୁ ଦେଇ ଯତନରେ ରଖିଲା ।

ଗନ୍ଦେନ ମାଁଝଙ୍କ ସାଥୀମାନେ ସବୁ କାମକୁ ଧରିଥିଲେ । ସେମାନଙ୍କ ହାତ ବାଜି ଫଳସବୁ ଦସି ଉଠିଲା । ଲୋକେ କହିଲେ, ବୁଢ଼ୀର ବିଲରେ ସୁବର୍ଣ୍ଣ-କୁକୁଡ଼ା ଉଡ଼ିଲା ।

ଆଉ ଗନ୍ଦେନ ମାଁଝଙ୍କି ବୁଢ଼ି ପାଳିଲା ପୁଅପରି । ପାଁଜ ଥାଆନ୍ତି ଘର ଭିତରେ । ବାହାରକୁ, କ୍ଷେତକୁ ଯାଆନ୍ତି ନାହିଁ । ହେଲେ ଭିତରେ ସେ ଖାଲି ପ୍ରାର୍ଥନା କରୁଥାଆନ୍ତି । ପ୍ରଭୁଙ୍କୁ ଜଣାଉ ଥାଆନ୍ତି, ତାଙ୍କର ଚନ୍ଦ୍ରକିରଣ ତାଙ୍କ ପାଖକୁ ଫେରିଆସୁ ।

ଧାଁଜ ସେଠି ରହିବାରୁ ସେ ଗାଁର ଆଖପାଖରେ ଚହଳ ପଡ଼ିଗଲା । ଲୋକେ ବୁଢ଼ୀର କପାଳକୁ ବାହା ବାହା କଲେ । ପିଲାଟି ନୁହେଁ ଯେ, ଦେବତାର ପୁଅଟିଏ । କୋଉ ପୁଣ୍ୟ କରିଥିଲା ବୁଢ଼ୀ କେଜାଣି, ତା'ଘରେ ଏମିତି ଦେବତାର ପୁଅଟିଏ ଆସି ଆଶ୍ରୟ ନେଲା ।

ଆଜି ସେ ପୁଅଟିକୁ ଦେଖିବାକୁ ଗୁରଆଡ଼ୁ ବହୁ ଲୋକବାକ ଆସିଲେ । ଧାଁଜ କିନ୍ତୁ ସେମିତି ଲୁଚି ରହିଥାଆନ୍ତି । କାହାକୁ ଦେଖା ଦିଅନ୍ତିନି ।

ଛଅ କଳସୀକନ୍ୟାର ମାଆ କାନରେ ଏକଥା ପଡ଼ିଲା । ବୁଢ଼ୀର ମନ ଘର ଧରିଲାନି । ସେ ତା' ଝିଅମାନଙ୍କୁ ଡାକିଲା ।

ବୁଢ଼ୀ ଭାବୁଥାଏ, ତା' ଝିଅଟିମାନେ ଖୁବ୍ ସୁନ୍ଦରୀ । ତେଣୁ ଯଦି ହୁଏ, ଏଇ ପିଲାଟି ସହିତ, ତାହାକୁ ଯୋଡ଼ିଦେଲେ ଭଲ ହେବ । ତେଣୁ ସେ ତା' ଝିଅମାନଙ୍କୁ କହିଲା, "ତମେ ସମସ୍ତେ ସଜବାଜ ହେଇ ଯିବରେ । ଥରେ ସେ ଅପୂର୍ବଙ୍କୁ ଦେଖି ଆସିବ ।"

ଏକଥା କହିଲାବେଳେ ବୁଢ଼ୀ ବେଶ୍ ସାବଧାନ ଥାଏ । ସେଇ ଯୋଉ ଘାକାରୁଣୀ ଝିଅଟି ଆସିଛି, ସେ ଯେମିତି କଥାର ସୁରାକ୍ ନ ପାଏ । ତା'କୁ ସେ ବରଗିଥାଏ, "ଏ କାମ କର, ସେ କାମ କର । ଯା ନଈକି । ନେଇଯା ଘରଯାକର ବାସନକୁସନ । ସବୁ ସଫାସଫି କରିବୁ । ଟକ୍ ଟକ୍ କରିବୁ ଏସବୁ । ଟିକେ ହେଲେ ମଇଳା ରହିବନି । ନୂଆପରି ଝଟକିବ । ···ହଁ, ପରିବା ଆଣିବୁ ବଗିଚାରୁ ।" ଏମିତି ଏମିତି ଅନେକ କାମ ତା' ମୁଣ୍ଡରେ । କାମରୁ ଛୁଟି ମିଳିବ ଯେ ଝିଅଟା ଅନ୍ୟ କୋଉ କଥାରେ ମୁଣ୍ଡ ଭରିବ ! କାମ କରୁ କରୁ ତ ତା'ର ବେଳ ବହିଯିବ ।

ଦିନ ଠିକ୍ ହେଲା । ସକାଳୁ ସକାଳୁ ସୁନାକାଳୀ ଲାଗିଛି କାମରେ । ସେ ଯାଇଛି ପାଖ ନଈକି । ଗାଡ଼ିଏ ହେବ ବାସନକୁସନ । ମାଜୁଛି ତ ମାଜୁଛି, କୋଉଠି ଟିକେ କଳା ରହିଲା କି ? କୋଉଠି ରହିଗଲା କି ମଇଳା ? ନିଖାରି ନିଖାରି ସେ ଦେଖୁଛି । ଚକ୍‌ଚକେଇ ଯାଉଛି ସବୁ ବାସନ ।

ଆଉ ଏଣେ କଳସୀଝିଏ ଗାଧୋଇ ପାଧୋଇ ଚହଟ ଚକ୍‌କଣ ଚକଚକିଆ ପୋଷାକ ପିନ୍ଧିଛନ୍ତି ସେମାନେ । ସେମାନେ ସଜବାଜ ହୋଇ ବାହାରିଲେ ।

ଏମିତି ଯାଉଥାନ୍ତି । ବାଟରେ ପଡ଼ିଲା ନଈଟାଏ । ବେଶ୍ ଗମ୍ଭୀରିଆ ନଈ । ନାଇଁ ନାଆ । କେମିତି ସେମାନେ ପାରିହେବେ ଏ ନଈ ? ସେମାନେ ଭାବନାରେ ପଡ଼ିଗଲେ ।

ଦେଖିଲେ, ଗୋଟାଏ ମସ୍ତବଡ଼ ମାଣ୍ଡିଆ କଙ୍କଡ଼ା । କଙ୍କଡ଼ାଟି ଏ ପାଖରେ ବସିଛି ।



ସେ ପଚାରିଲା, "ତମେ ସବୁ ପାରିହବ କି ନଈ !"

କଳସୀଝିଏ କହିଲେ, "ହଁ ସେ କଙ୍କଡ଼ା ଭାଇ,
ନାଆ ନାଇଁ କି ନାଉରି ନାଇଁ !!"

କଙ୍କଡ଼ା କହିଲା, "ଓଃ ! ଏଇ କଥା ତ !
ସେଥିକି ଭାବନା କରୁଚ କାଇଁ ?"

ନୀଳକଳସୀ କହିଲା, "କେମିତି ଯିବୁ ଯେ ?"

କଙ୍କଡ଼ା କହିଲା, "ମୋ' ଉପରେ ବସ କ, ମୁଁ ତମକୁ ନେଇଯିବି ।"

ସବୁଜ କଳସୀ କହିଲା, "ବେଶ୍ ଭଲ ଭଲ !"

କଙ୍କଡ଼ା ଟିକେ ହସିଲା । ତା'ପରେ କହିଲା,

"ଜଣ ଜଣ କରି ଆସିବ ତମେ ଲୋ,
ପାରି କରିଦେବି ନଈ,
ସବୁରି ମୁହଁରେ ଚୁମା ଦେଇଥିବ
ଘାଟ ପାରି ମୂଲ ପାଇଁ !!"

କଳସୀଝିଏ କେଁ କେଁ ହେଲେ । କି ଅଜବ୍ କଥା ! ବୁଢ଼ା କଙ୍କଡ଼ା ବେହଲ ହେଉଛି । ହେଲେ, କଙ୍କଡ଼ା ମାନୁନି । ପୁଣି ସେମାନଙ୍କୁ ଯିବାକୁ ହେବ । ବେଳ ଆସୁନି ତ, ବେଳ ଯାଉଛି । ଶେଷକୁ ସେଇଆ ହେଲା । ସେମାନେ ରାଜି ହେଲେ । କଙ୍କଡ଼ା ସେଇ ସର୍ତ୍ତରେ ସେମାନଙ୍କୁ ପାରି କରିଦେଲା ।

ଏ ମାଣ୍ଡିଆ କଙ୍କଡ଼ାଟା ପ୍ରକୃତରେ କଙ୍କଡ଼ା ନ ଥିଲା । ସେ ଥିଲା ପ୍ରଭୁ କ୍ଲାନ୍ । ସେ ଅସୁରମାନଙ୍କ ରଜା ସେ ଦେବୀ ଶେଖର ତାଙ୍କ କଥା ଶୁଣିଥିଲା । ଶୁଣିଥିଲା ତାଙ୍କର ରୂପର କଥା । ଆଜି ସେ କେମିତି କୁଆଡ଼େ ଉହାନ୍ ହୋଇଗଲେ ସେ କଥା ବି । ତେଣୁ କଙ୍କଡ଼ା ହୋଇ ସେ ଖୋଜୁଥାଏ ଦେବୀ ଶେଖର ତାଙ୍କୁ ।

କଳସୀଘରର ଝିଅ ସବୁ ସେଇ ଦାଦାପାନ ଗାଁର ବୁଢ଼ୀ ଘରେ ପହଞ୍ଚିଲେ । ବୁଢ଼ୀ ଏମାନଙ୍କୁ ଦେଖି ଖୁବ୍ ଖୁସି ହେଲା । ଭାବିଲା, ପୁଅ ତା'ର ଏ ଭିତରୁ ଜଣକୁ ହେଲେ ବାଛିବ । ଖୁବ୍ ସୁନ୍ଦରୀ ଝିଅଗୁଡ଼ିକ । ତା'ର ବୋହୂଟିଏ ଲୋଡ଼ା । ଭଲ ସାଜିବ । ସେମାନଙ୍କୁ ସେ ଭଲଭାବେ ଚରଚ୍ଚ କଲା । ଖାଇବା ପିଇବାର ଯୋଗାଡ଼ କଲା । ଘରେ ରଖିଲା । ପୁଅକୁ କହିଲା,

"ଫଗ୍ରମଣ୍ଡିକା ନୂଅଟି ଝିଅ
ସରଗ ଡଗ ସର,
ବୋହୂ ହେବାକୁ ଆସି ଗଲେଣି
ରୂପରେ ଦପ ଭର ।
ଆସିଲୁ ପୂଅ ବାଛିଲୁ ଜଣେ
ଘରଟା ଯାଉ ପୂର
ଛଅଟି ଝିଅ ଆସିଗଲେଣି
ଛଅ ଛଅଟି ପଗ୍ !!"

ଘର ଭିତରେ ପାଁଜ । କାହାକୁ ଦେଖାଦେଉ ନଥା'ନ୍ତି । ସେଇଠି ଥାଇ ସେ ଜାଣିଗଲେଣି ଏମାନେ କଏ । ସେ ଆଦୌ ବାହାରକୁ ଆସିଲେନ । ସେଇଠି ଥାଇ କହିଲେ,

"କଏ କହେ ପଗ୍ ଆଗୋ,
କଏ କହେ ଡଗ୍ ।
ଆଇଁଷା ମୋଟଗ୍ର ବାସେ
ତନୁ ସବୁ ପଗ !!"

ଏମିତି ବୁଢ଼ୀ ଡାକୁଥାଏ ଥରକୁଥର । ପାଁଜ ଘରେ ଥାଇ ସେମିତି ଜବାବ୍ ଦେଉଥାଆନ୍ତି ।

୬।

ନଣ୍ଡକୂଳରେ ସୁନାକଳନୀ କାମ କରୁଚି । ଝାଳନାଳ ହେଉଚି ! ସେ ଆଉ କାମକୁ ପାରୁନି । ମୋ ଝକଳ ହେଲା । ଆଉ ପ୍ରଭୁ ଗରୁଡ଼ଙ୍କୁ ଡାକଲା । କାନ୍ଦ କାନ୍ଦ ତା' ଦୁଃଖ ଦୂର କରିବାକୁ ମିନତି କଲା ।

ଗରୁଡ଼ ତା' ଡାକ ଶୁଣିଲେ । ସେ ଆସି ତା' ପାଖରେ ହାଜର । କହିଲେ, "କିଛି ଭାବନା କରନ ଲୋ ! ତୋ'ର ସବୁ କାମ ଠିକ୍ ହୋଇଯିବ ।

ସେ ତାଙ୍କ ନଖରେ ବାସନଗୁଡ଼ାକ ମାଜ ପକାଇଲେ । ତାଙ୍କ ଡେଣାରେ ପୋଛିଦେଲେ । ବାସନଗୁଡ଼ାକ ନୂଆଠୁ ବି ଅଧିକ ସୁନ୍ଦର ଦିଶିଲା ।

ସୁନାକଳସୀ କହିଲା,

"ଆହେ ଦେବତା, ପକ୍ଷୀ ଦେବତା,
କେତେ କହିବି ମୋ ଦୁଃଖ କଥା !
ପରିବା ଆଉ ଆଣି ତ ନାଇଁ,
ବୁଢ଼ୀ ମାରିବ ମୋତେ ଗୋଡ଼ାଇ ॥"

ଗରୁଡ଼ କହିଲେ, "ହୋଇବ ସବୁ ପବନ ଭୁଇ ।"

ସଙ୍ଗେ ସଙ୍ଗେ ପରିବାପତ୍ର ସବୁ ଛୋଳା ହୋଇଗଲା । ସବୁ ଜିନିଷ ଶୂନ୍ୟେ ଶୂନ୍ୟେ ଉଠିଲା । ବୁଢ଼ୀର ଘରେ ପହଞ୍ଚିଗଲା ।

ସୁନାକଳସୀ ଗରୁଡ଼ଙ୍କ ପାଦତଳେ ପଡ଼ିଗଲା । କହିଲା, "ମୁଁ କେମିତି ଆପଣଙ୍କ ଋଣ ଶୁଝିବି ! ମୁଁ ଯେ ଅତି ଅରକ୍ଷ ମଣିଷଟାଏ !"

"ଚିନ୍ତା କରନା । ତମେ ବେଗି ବେଗି ବଡ଼ଆଉ ହୋଇ ପଡ଼ିଲ ! ଦାଦାପାନ ଯାଅ । ସେଇଠି ତମର ମନୋବାଞ୍ଛା ପୂରଣ ହେବ । ...ହଁ, ନିଅ ଏଇ ପରଟି । ସବୁବେଳେ ପାଖରେ ରଖିଥିବ । ଯାହା ଲୋଡ଼ିବ... ତା' ହେବ ।" ଗରୁଡ଼ ଏତକ କହିଲେ । ସୁନାକଳସୀକୁ ଡେଣାରୁ ଦେଲେ ଗୋଟିଏ ପରଟିଏ ।

ସୁନାକଳସୀ ପରଟି ଧରିଲା ।

ତା' ବଦନରେ ରୂପର ବିଜୁଳି ଚମକିଲା ।

ସେ ପହଞ୍ଚିଲା ସେଇ ନଈକୂଳରେ । ମାଣ୍ଡିଆ କଙ୍କଡ଼ା ଜଗି ବସିଛି । ସୁନାକଳସୀକୁ କହିଲା,

"ଯିବୁ କି ସେପାରି ନାଇଁ ନାଉରି,
ଘାଟ ଜଗିଛି ଲୋ କନକଗୋରୀ ।
ଘାଟମୂଲ ମୁଇଁ ନେବିନି ଜମା,
ଦେଇଥିବୁ ଖାଲି ଗୋଟିଏ ଚୁମା !!"

ସୁନାକଳସୀ ଏ କଥାରେ କଣ଼ ଗଜ ହୁଅନ୍ତା ! ଗରୁଡ଼ ଦେଇଥିବା ପରଟି ସେ ହଲାଇଦେଲା । କହିଲା,

"ନଈରେ ନଈ ଯାଆ ଶୁଖି
ଆରପାରିକ ଯାଏ,
ମାଣ୍ଡିଆ କଙ୍କଡ଼ା ଜଗିଛୁ ଘାଟ
ମୂଳ ଦବରେ କଏ !!"

ସତକୁସତ ନଈଟା ଶୁଖି ଖଡ଼୍ ଖଡ଼୍ ହୋଇଗଲା । ସୁନାକଳସୀ ନାଚ ନାଚ ପାରି ହୋଇଗଲା ସେପାଖକୁ ।

କଙ୍କଡ଼ା ତାଜୁବ୍ ! ସେ ଏବେ ଜାଣିଗଲା ଏ ସହଜ ଝିଅ ନୁହେଁ । ଏ ହେଉଛି ସେଇ ଦେଖା ଶେଖର ରାଜ । ନ ହେଲେ ଏ ତେଜ କାହାର ହେବ ! ଆଉ ଝିଅଟିର କ ଶକ୍ତି ! ଅସୁର ରଜାର ସବୁ ବୁଦ୍ଧି ବଣା ହୋଇଗଲା । ସେ କହିଲା,

"ତମ ବାଟରେ ତମେ ତ ଗଲ,
ନଈକ କଣ଼ ଶୁଖାଇ ଦେଲ ?
ଆଣିଦଅ ମୋ ପାଣି,
ବଡ଼ପଣଟା ତମର ସିନା
ପାରିବ ତେବେ ଜାଣି !!"

ସୁନାକଳସୀ ପୁଣି ସେ ପରଟିକୁ ଟେକ ବୁଲାଇଦେଲା । ନଈରେ ପାଣି ଭରି । ଅସୁର ରଜା କ'ଣ କରିବ ! ସେଇ ପାଣିରେ ବୁଡ଼ିଗଲା । ସେ ଉଭେଇ ଗଲା । ଗଲାବେଳେ କହିଗଲା,

"ଦେଖା ଶେଖର, ଯେତେ ଲୁଚାଇଲେ ଲୁଚିବ ନାଇଁ ଗୋ
ରୂପ ଗୁଣ ସବୁ ତମର ।
ଯାହାକୁ ଯିଏ,
ତମର ଯେ ହେବ ଅନାଇଁ ରହିଛି
ତମର ବାଟରେ ମୁଁ ଅବା କଏ !"

ସୁନାକଲସୀ ମୁହଁରେ ହସ ଚହଟିଲା ।

ଦାଦାପାନ ଗାଁରେ ସୁନାକଲସୀ ପହଞ୍ଚିଲା । ତା'କୁ ଦେଖୁ ଦେଖୁ କଲସୀଝିଅ ସବୁ ଫୁସ୍‌ଫାସ୍ ହେଲେ । ଏ କେମିତି ଆସିଲା ! କାହିଁକି ଆସିଲା ! କେମିତି ଏ ଅଜାଲା ରୂପ ! ଇଏତ ଆମର ସୁଖ ଶରଧା ସାରିଦେବ । ସେମାନେ ତା'କୁ ଘେରିଗଲେ । ବୁର୍‌ବୁର କରି ଗାଳିଦେଲେ । ଆଉ ପାଟିକରି ଉଠିଲେ,

"ଆମ ଗୃହିଣୀ ଆସିଲାଣି,
ମସିଆ ମସିଆ ବସିଲାଣି,
ବାହା ହେବାଲାଗି ରୂପର କୁମାର,
ଏହାଲାଗି ଉଠି ବସିଲାଣି !!"

ସେମାନେ ସଭିଏଁ ଖେଁ ଖେଁ ହସି ଉଠିଲେ । ତା'କୁ ଖୁବ୍ ଚିଡ଼ାଇଲେ । ଥଟ୍ଟା ପରିହାସ କଲେ ।

କିନ୍ତୁ ବୁଢ଼ୀର ବଗୁର ଅଲଗା । ସେ କି ଜାଣେ···କିଏ ଦାସୀ ଗୃହିଣୀ···କିଏ ମାଲିକାଣୀ ?

ସେ ଡାକି ଉଠିଲା,

"ପୁଅରେ ପୁଅ,
ବୋହୂ ହେବାଲାଗି ଅନାଇଁ ରହିଛି
ଗୋଟିଏ ଝିଅ !"

ଏଥର ମାଇ କବାଟ ଖୋଲିଲା । ଘରଭିତରୁ ବାହାରି ଆସିଲେ ପାଁଜ । ତାଙ୍କର ଆଖି ପଡ଼ିଲା ଏ ଝିଅଟି ଉପରେ । ହଠାତ୍ ସେ ଦେଖି ପାରିଲେ ଆକାଶରୁ ସରୁ ରେଖାଟିଏ ଖସି ଆସିଲା । ସେ ରେଖା ଏକ ପବିତ୍ର ଆଲୁଅ ।

ପାଁଜ ଚିତ୍କାର କରି ଉଠିଲେ, "ଚନ୍ଦ୍ର କରଣ !"

ସୁନାକଲସୀ ଚୁପ୍‌ଚାପ୍ ଠିଆ ହୋଇଥିଲା ।

ପାଁଜ ଆଗେଇ ଗଲେ, "ଦେଖ ଅଙ୍ଗରାଣୀ ! ତୁମେ ଯେ ଦୁଅନା କାହିଁକ, ତମେ ଦେଖ ଅଙ୍ଗରାଣୀ !"

"ମୁଁ···ମୁଁ···ମୁଁ···"

"ତୁ···ତୁ···ସୁନାକଳସୀ···"

ଆମର ଦାସୀ "କଳସୀଟିଏ ବାଗରେ ପାଟିକଲେ ।"

ପାଁଜ କହିଲେ, "ତମେ କେହି ଜାଣନ । ଏ ହେଉଛନ୍ତି ଦେଖ ଶେଖର ଚାଜ । କେଦର ଦେଶର ଇଜାଟିଅ । ତାଙ୍କଠି ମିଶିଛି ଅଙ୍ଗରାଣୀଙ୍କ ଆତ୍ମା ! ସେ ମୋର ଚନ୍ଦ୍ରକରଣ !!"

ସମସ୍ତେ ପାଟିକରି ଉଠିଲେ, "ସତେ ! ଆମକୁ କ୍ଷମାକର ଦେଖ !"

# ବାଣୁଆ

ତା' ନାଁ ଆଓ୍ୱାଂନ ଦୁର୍ମାନ । ସଲଖ ସୁନ୍ଦର ଭେଣ୍ଡିଆଟିଏ । ସେ ରହୁଥାଏ ଗୋଟେ ଗାଁରେ । ଗ୍ଲେଷ୍ଟ ଗାଁ ସେ ଗାଁରେ ଆଓ୍ୱାଂଦୁର୍ମାନକୁ ସମସ୍ତେ ଜାଣନ୍ତି । ଜାଣନ୍ତି ମାନେ…ଜାଣନ୍ତି ଯେ ସିଏ ଜଣେ ବାଣୁଆ । ଖୁବ୍ ବଡ଼ ବାଣୁଆ । ଖାଉଚି ତ ପାଖରେ ଅଛି ବର୍ଚ୍ଛା । ଶୋଉଚି ତ ପାଖରେ ବର୍ଚ୍ଛା । ବର୍ଚ୍ଛା ତା'ର ସବୁବେଳର ସାଙ୍ଗ ।

ଗାଁକୁ ଲାଗି ଜଙ୍ଗଲ ।

ସେ ଜଙ୍ଗଲ ଆଓ୍ୱାଂ ଦୁର୍ମାନର ଅତି ପ୍ରିୟ ଜାଗା । ସେ ବହୁ ସମୟ କାଟେ ଜଙ୍ଗଲରେ । ତା'ର ଗଛ, ଲଟା, ଫୁଲ, ଫଳ ସବୁ ତା'ର ଅତି ପ୍ରିୟ । ସବୁକୁ ସେ ଭଲଭାବେ ଚିହ୍ନିଚି, ସବୁକୁ ଚିହ୍ନିଛି ଗଭୀର ଭାବେ । ସେଇ ବଣରେ ସେ ଶିକାର ଖୋଜି ବୁଲୁଥାଏ ।

ଗୋଟାଏ ଦିନର କଥା…

ଟାଣ ଖରା ପଡ଼ୁଥାଏ । ଆଓ୍ୱାଂ ଦୁର୍ମାନ ହାତରେ ବର୍ଚ୍ଛା । ତା' ମନ ଖଜବଜ ହେଉଛି । ତା' ହାତ ସଲସଲ କରୁ । ସେ ଧାଇଁଲା ବଣଆଡ଼କୁ । ଯାଉ ଯାଉ ବଣର ଗଭୀରତା ଆଡ଼କୁ ଚାଲିଗଲା । ସେଠି ବଣ ଥିଲା ନୀରବ, ଥିଲା ଶୀତଳ ।

ସେ ତା'ର ଧୂଆଁପତ୍ରର ମୁଣାଟାକୁ ଅଣ୍ଟାରୁ କାଢ଼ିଲା । ହଠାତରେ ଶିଙ୍ଗରେ ଝୁଲାଇ ଦେଲା । ଆଉ ଧୂଆଁପତ୍ର କାଢ଼ିଲା । ବଳିଲା । କାହାଳୀ । ଲଗାଇଲା ନିଆଁ । ପାଖରେ ଥାଏ ଗଛଟେ । ସେ ଗଛକୁ ଆଉଜି ବସିଲା ସେ । ପିଇଲା ତା' କାହାଳୀ ।

ସେ ଗାଉଥାଏ···ଆଉ ଭାବୁଥାଏ···

"ଦେଖରେ ଦେଖ ଦୁନିଆଁ ଲୋକ
ନଯ୍ନ ମେଲି ଦେଖ,
ବାଣୁଆ ପଣେ ନାହିଁ କେ ଜଣେ
ହେବ ମୋ' ସମକକ୍ଷ ।।

ଚଢ଼ିପୂରୁପ୍ ଯାଏ ମୁଁ ଗଛ
ପାରେନି କେହି ଜାଣି
ଦାବୁଡ଼ି ଯାଏ ମୋଅରି ଆଗେ
ଦିଏ ମୁଁ ତା'ରେ ହାଣି ।।"

ଏମିତି ଭାବୁଥାଏ । ବାଟ ଗାଉଥାଏ । ସତକୁସତ ସେ କେତେ-ବେଳେ ଆସି ଗୋଟାଏ ହରିଣ ଉପରେ ପ୍ରାୟ ଝୁଣ୍ଟି ପଡ଼ିବା ପରି ହୋଇଗଲାଣି ସେ'କଥା ତାକୁ ଜଣାଥାଏନି । ଆଉ ସେ ହରିଣଟା ବି ଶୋଇପଡ଼ିଥାଏ ଗଛ ଛାଇରେ । କି ନିଦରେ ବାବା ! ମଣିଷଟା ଆସି ଦିହକୁ ଲାଗି ଠିଆ ହେଲେ ସେ ଶୋଇଛି !

ଆଓ୍ୱାଂ ହରିଣର ଗୋଟା ଦିହ ଉପରେ ଆଖି ପକାଇ ନେଲା । ଏମିତିକା ଗୋଟେ ସାନମାନିଆ ଜୀବ ଏ ହରିଣଟା ! କେଡ଼େ ନିଶ୍ଚିନ୍ତ ହେ ! ଏଥିରେ ପୁଣି ସିଏ ଶୋଇଛି । ଏ ଅବସ୍ଥାରେ କି ତାକୁ ମରାଯାଏ ! ମୁଁ ବାଣୁଆମାନଙ୍କ ଭିତରେ ରଜା । ଆଉ ଏ ବଣର ସବୁ ପଶୁ ମୋ ନାଁରେ ଡରି ଛେରି ପକାନ୍ତି—ଥରଯାଆନ୍ତି । ସେ ସବୁ ଭିତରେ ଏଇଟା ଗୋଟେ ନିହାତି ଡରକୁଳା ଜୀବ । ନିହାତି ଗୋଟେ ଅରକ୍ଷ ଜୀବ । ଏମିତି ନିରେଖ ଜୀବଟାକୁ ମାରିବା ଠିକ୍ ହେବନି । ମୁଁ ଏଣ୍ଟୁଗେ ଯା'ପାଖେ ବସେ । କାହାଳୀ ପିଏ । ଆଣିଛି ତ ଧୂଆଁପତ୍ର !

ତା' ପାଟି ଓ ନାକରୁ ଧୂଆଁ ବାହାରୁଥାଏ ଫସ୍ ଫସ୍ ! ସେ ଧୂଆଁ ବଙ୍କେଇ ବଙ୍କେଇ ଉପରକୁ ଉଠୁଥାଏ । ଆଉ ତା' ଆଖି ଆଗରେ ଭାସିଗଲା ଗୋଟେ ଧୂଆଁଳିଆ ଛବି ।

ଏଇ ହରିଣଟା ଏଠିଗେ ଶୋଇଛି । ତାକୁ ମାରିଦେବି । ପାଇବି ବୋଝ ବୋଝ ମାଉଁସ । ଘରେ ଅଛନ୍ତି ମା…ବାପା…ଆଉ ମୁଁ ଜଣେ । ଏମିତି ଆମେ ହେଲୁ ତିନିଜଣ । କେତେ ବା ମାଉଁସ ଖାଇବୁ ? ବହୁତ ବଳିଯିବ । ମାଉଁସ ବିକିବି । ପାଇବି ଅନେକ ପଇସା । ଆ ! କେତେ ନା କେତେ ପଇସା ହେବ ଯେ ! କ'ଣ କରିବି ଏ ପଇସାରେ ?



ସେ ନିଜକୁ ନିଜେ ଏମିତି ପ୍ରଶ୍ନ ପଚାରିଲା । ଆଉ ନିଜକୁ ନିଜେ ତା'ର ଉତ୍ତର ଦେଲା । ସେ ଉତ୍ତର ଭାବିବାବେଳେ ମନେ ମନେ ହସି ପକାଇଲା ।

କାହିଁକି ମ…ମୁଁ କିଣିବି ହଂସଗୁଡ଼ାଏ । ଗୁଡ଼ାଏ କହିଲି ନା…। ଗୁଡ଼ାଏ ନିଶ୍ଚୟ କିଣିବି । ସେମାନେ ଚାଲବୁଲ କରୁଥିବେ । ଆଉ ପାଟି କରୁଥିବେ । ଏମିତି ପାଟିକରିବେ ଯେ, ଲୋକେ ରାଗିଯିବେ । ସେମାନେ ଚିତ୍କାର କରିବେ, କାହାର ଏ ହଂସ ଗୁଡ଼ା ହୋ ?'

ମୋ' ମା' କହିବେ, "ସେ ସବୁ ଆଓ୍ଵଂ ଦୁର୍ମାନର ।"

ଲୋକେ କହିବେ, "ଏତେଗୁଡ଼ା ହଂସ ଯାହାର ଥାଇ
କେତେ ଥିଲବାଲ ଥିବ ସେ ହୋଇ !!"

ଆଓ୍ୱାଂର ମନରେ ସ୍ୱପ୍ନ ତା'ର ପାଖୁଡ଼ା ମେଲିଲା । ସେ ସ୍ୱପ୍ନରେ ଆଉ ଆପ୍ତୁର ନାହିଁ । ଗୋଟିଏ ପାଖୁଡ଼ା ପାଖକୁ ଆଉ ପାଖୁଡ଼ାଟିଏ ଉଠିଲା । ତା'ପରେ ସେ ଭାବିଲା, "ଓ ମୋ'ର ତ ଗୁଡ଼ାଏ ହଂସ ଥିବେ । ସେଗୁଡ଼ାକ ବଢ଼ିବ । ହାତକୁ ଆସିବ କଞ୍ଚା ପଇସା । ସେ ପଇସାରେ କିଣିବ ଛେଳିଗୁଡ଼ାଏ । ଗୋଟାଏ ନୁହେଁ କି ଯୋଡ଼ାଏ ନୁହେଁ—ଭଳି ଭଳି ଛ' ସାତ ଭଳି । ଛେଳି ଯିବେ ଚରି । ଘରେ ଘାସପତ୍ର ମିଳିବନି । ପାଖ ବିଲ ପଡ଼ିଆରେ ଫସଲ ଥିବ । ଛେଳି ପଶିବେ ଫସଲରେ । ଖ୍ରେବାଇ ଦେଇଯିବେ ଫସଲ । କଞ୍ଚା ପାଚିଲା କିଛି ବାଛିବେନି । ଛେଳି କି ବାରେ !

ତା'ପରେ ଚଷା ଗୃହୀଏ ଦେଖିବେ । ପାଟିକରି ଉଠିବେ, "ହୋ ହୋ ଛେଳି ଖାଇଲା, ଛେଳି । କାହାର ଏ ଛେଳି ?"

ମୋ' ମାଁ ଥିବେ ପାଖରେ । କହିବେ, "ଓ ! ସେଗୁଡ଼ା ମୋ' ପୁଅର । ମୋ ପୁଅ ଆଓ୍ୱାଂର !"

ଲୋକେ ତାଜୁବ୍ ହୋଇଯିବେ । କହିବେ,

"ଏତେଗୁଡ଼ା ଛେଳି ଯାହାର ଥାଇ
କେତେ ଥିଲବାଲା ଥିବ ସେ ହେଇ !"

ଆଓ୍ୱାଂ ଦମେ କହୁଲା ଢୋକିଲା । ତା' ମନର ସପନ ଲଟେଇଲା । ଲଟେଇ ଲଟେଇ ବଢ଼ିଲା । ସେ ଭାବିଚାଲିଲା, "ଆଉ ସେ ଗାଁକୁ ଗାଁ ବୁଲି ନେଳି ବଢ଼ିବ । ଗୋଟେ ନେଳିରୁ ଏତକ ମିଳିବ । ଭେଳି ଭେଳି ଛେଳି । ଥଳି ଥଳି ଟଙ୍କା । ସେ ଟଙ୍କାରେ ଏଥର କିଣିବ ପୋଡ଼ ମଇଁଷି । ପୋଡ଼ରେ ହେବ ଗୃଷ । ମଇଁଷି ଦେବ କ୍ଷୀର । ଧୂମା ଧୂମା କ୍ଷୀର । କ୍ଷୀର ବି ବଢ଼ିବ । ଲୋକେ ପଚାରିବେ, "ଏତେ·କ୍ଷୀର···ଏତେ ମଇଁଷି କାହାର ?"

ପାଖରେ ଥିବ ମୋ ମା' । ସେ କହିବେ, "ମୋ ପୁଅର । ମୋ ଆଓ୍ୱାଂ ଦୁର୍ମାନର ।"

ସେ ଲୋକେ ତ ଅବାକ୍ ହୋଇଯିବେ । ସେମାନେ କହିଟକାଇବେ,

ଏତେଗୁଡ଼ା ମଇଁଷି ଯା'ର ଥାଇ,
ବଡ଼ ଧନବାନ ଥିବ ସେ ହୋଇ !!

ମୁଁ ଅଳ୍ପ ଦୂରରେ ଠିଆ ହୋଇଥିବି । ପିଉଥିବି କାହାଣୀ ।

ସେ ଏଥର ଜୋର୍ ମେଡ଼କା ମାରିଲା । ଲକ୍ଷ୍ୟକଲା ସେ ଧୂଆଁ କେମିତି ଉଠି ପଡ଼ି ବଙ୍କେଇ ଯାଉଚି । ଆଉ ତା' ସହ ତ' ଚନ୍ତା ବି ଉଠିପଡ଼ି ଉଡ଼ିଲା ।

"ମୁଁ ଏଥର ପୋଡ଼ ମଇଁଷିର କଥା ଭାବିବନି । ଏଥର ହୋଡ଼ ମଇଁଷି ବିକିଦେବି । କିଣିବି ହାତୀ । ସେ ହାତୀଗୁଡ଼ା ଖୁବ୍ ବଳୁଆ । ସେମାନେ ପଡ଼ଶା ଅଡ଼ଶାର ଝାଟିମାଟିର ଘର ସବୁ ଭାଙ୍ଗିଦେବେ । ଗଛକୁ ଟାଣି ଓଲଟି ତଳେ ପକାଇଦେବେ । ଫସଲ ମାଡ଼ିଦେଇ ଖତମ କରିଦେବେ । ପାଖ ନଈ ଓ ପୋଖରୀ ପାଣି ଗୋଳାଇ କାଦୁଅ ପଙ୍କୁଆ କରିଦେବେ । ଲୋକେ ଏସବୁ ଦେଖି ଡରିଯିବେ । ପଚାରିବେ,

"ହାତୀସବୁ କାହାର ?"

ମାଆ କହିବେ, "ମୋ' ପୁଅର । ମୋ' ଆଓ୍ୱାଂ ଦୁର୍ମାନର !!"

ସେ ଲୋକେ ତ ପ୍ରଶଂସାରେ ଉଚ୍ଛୁଳି ପଡ଼ିବେ । ସେମାନେ କହିବେ,

"ଏତେ ଏତେ ହାତୀ ଯାହାର ଥାଇ
କେଡ଼େ ଧନବାନ ନ ଥିବ ହୋଇ !!"

ସେ ପୁଣି ବଡ଼ ଦମେ ଟାଣିଲା ଧୂଆଁ । ଧୂଆଁ ଉଠି ଆକାଶରେ ମିଳେଇଗଲା । ଆକାଶରେ କେଉଁଠି ପବନରେ ସେ ଧୂଆଁ ମିଶିଗଲା ସେ ଜାଣି ପାରିଲାନି । ମାତ୍ର ସାମନାରେ ଗଛଟିପକୁ ଚାହିଁ ରହିଲା ସେ ।

ଭାବୁଚି, ତା'ପରେ···ତା'ପରେ ହାତୀ ବିକା ଚାଲିବ । ହେଲେ ଯାହା ତାହା ଲୋକେ କ'ଣ ହାତୀ କିଣିବେ ! ହାତୀ କିଣିବା ଲୋକ ହେଉଛନ୍ତି ରଜା ରଜା ! ରଜା ଖାଲି ହାତୀ କିଣନ୍ତିନ । ସେ ଛତ୍ର ଟେକାଇବେ । ତାଙ୍କର

ଅଲଅଲ ଝିଅ ମୋ ସଙ୍ଗ ବାହା ହେବେ '...ବାହା ହେବେ !' ଏ କଥାରେ ତା ମନରେ ଆନନ୍ଦର ଅନେକ ଜୁଆର ଉଠିଲା । ତା' ମୁହଁରେ ରଙ୍ଗ ଉକୁଟି ପଡ଼ିଲା ସେ ପୁଣି ଗାଇଲା,

'ରଜାଘର ଝିଅ ବଡ଼ ସୁନ୍ଦରୀ ଲୋ
ଧରିବ ମୁଁ ତାର ହାତ,
ବଡ଼ ସୁକୁମାରୀ ଖସି ହେବ ଯେବେ
ବୋଇତ ଭିଡ଼ିବ କାତ ।
କଲ କଲ କଲ ନଦୀର ଜଳ ଲୋ
ବୋଇତଟି ଯିବ ଭାସି,
ରଜାର ଦୁଲଣୀ କଥା କହୁଥିବ
ହସମଣି ଯିବ ଖସି ।

ଆଜ ଆମେ ନଡ଼ ନଡ଼ ବୋଇତରେ ବୁଲୁଥିବୁ । ଲୋକର ଲୋକବାଣୀ ଅକଳନା । ସେମାନେ ଆମର ଗୋଡ଼କୁ ମୁଣ୍ଡକୁ ସେବୁଥିବେ । କିଏ ଝାଞ୍ଚୁଥିବ ଫୁଲ ଝଡ଼ଣା । କିଏ ପିଆଇବ ଶୀତଳ ପଣା । କିଏ ଖେଳାଇବ ଛୁଆକୁ ମୋ'ର । କିଏ ସାଜିଦେବ ବେଣୀ ଜେମାର । ଆଃ ! କି ମଜା ହେବରେ ଏ ଜୀବନଟା !

ସ୍ୱା'ଣ ଭିତରେ ମୋ' ଝିକିପୁଅଟି ଖେଳୁଥିବ ବୋଇତର ମଙ୍ଗ ପାଖେ ଆଜ ସେ ଖସିପଡ଼ିବ ପାଣିରେ । ପିଲା ଲୋକନା । ସିଏ କ'ଣ ଏତେ ଜାଗି ବୁଝି ଚଳିବ ? ହୋଇପାରିବ ଏତେ ସାବଧାନ ! ସେ ଖସିପଡ଼ିବ ପାଣିରେ ।

"ମୁଁ ଡେଇଁ ପଡ଼ିବ ।"

ସତକୁସତ ସେ ଡେଇଁ ପଡ଼ିଲା । ପାଟିକଲା, "ହୋ...ହୋ... ! ମୋ' ପୁଅ... ! ମୋ' ପୁଅଟି ଯେ ପାଣିରେ ପଡ଼ିଗଲା ! ହୋ ମାଝୀ ! ହୋ ମଙ୍ଗୁଆଳ ! ଆରେ ଚାକର ବାକର ଦଳ ! ଆରେ, କଅଣ ଦେଖୁଛ ରେ ! ପିଲାଟାକୁ ଉଠାଇ ଆଣ ରେ ।"

ସେଇ ସମୟରେ ଗଛରେ ତେରି ଯାଇଥିବା ତା ବରଗ୍ଛଟା ଖସି ପଡ଼ିଲା ହରଣ ଉପରେ ।

ଏଣେ ଫାଟି, ତେଣେ ବରଗ୍ଛ ପଡ଼ିବା । ଏ ଦୁଇଟି ଆକସ୍ମିକ ଘଟଣା ଚମକାଇ ଦେଲା ହରଣକୁ । ହରବ ଶୋଇବ କ'ଣ ! ବଡ଼ ଡରକା ସେ ଜୀବ । ତେଇଁପଡ଼...କୁଦାମାରି...ମାରିଲା ଡିଆଁ ।

ଆଓ୍ୱାଂର ସପନ ବି ଭାଙ୍ଗିଗଲା । ସେ ତା ଡାହାଣ ହାତର ବଳି ଆଙ୍ଗୁଳିରେ ଆଖି ମଳିଲା । ଗୋଟାଇଲା ତା'ର ବରଗ୍ଛକୁ । ଅଳସେଇ କରି ଠିଆହେଲା ।

'ଏଇଲାଗେ ମୁଁ ଥିଲି ଧନୀ । ଏଇଲାଗେ ହେଲି ଗରିବ । ତୋହରେ ପାଜି ହରଣ । ତୋତେ ନେଇଥିଲା ମୋ'ର ସପନ । ତୋହର ମାଉଁସ କରି ମୁଁ ପୁଞ୍ଜି । ହୋଇଥିଲି କେଡ଼େ ଧନୀ ମୁଁ ଆଜି । ଆରେ ଆରେ ! ପଳାଇ ଗଲାରେ ମୋ ଜାହାଜ, ରଜାଝିଅ, ମୋ କୁନିପୁଅ ସବୁ ନେଇ ଗଲାରେ ! ଆରେ, ନେଇଗଲା ରେ ମୋ'ର ଧୂଆଁ ପଥର ଥଳି । ଏ ! ଏ !! ଏ !!!......"

ହରଣ ତା କଥା ଶୁଣିବାକୁ ନିଶ୍ଚୟ ଥିଲାନି । ବେଳ ବେଶୀ ବଢ଼ି ଯାଇଥିଲା । ହେଲେ, ବଣଟା ଥିଲା ଗ୍ଛୟାଣୀତଳ । ତେଙ୍ଗା ଗଛଗୁଡ଼ାକୁ ଗାଧୋଇ ଦେଇ ସୁନା କିରଣରେ ସୂର୍ଯ୍ୟ ବେଳେ ବେଳେ ଚୁପ୍‌କରି ମାଟି ଛୁଇଁ ଯାଉଥିଲା ।

ଆଓ୍ୱାଂ ଉଠିଲା । ସେ ପାଦ ବଢ଼ାଇଲା । ପବନରେ ଗଛଲତା ଦୋହଲି ଯାଉଥିଲା । ସେମାନେ ଖୁସିରେ ଗୀତ ଗାଉଥିଲେ ।

ମନକୁମନ ସେ ପଗ୍ଚରିଲା, 'ପବନ କ'ଣ କହୁଛ ?' ପୁଣି ସେ ଶୁଣିଲା, ଗଛଲତା କ'ଣ କହୁଚନ୍ତି ? ତା ମୁହଁରେ ହସ ଭାଙ୍ଗିଗଲା ।

'ଧୂଆଁ ପଥରକ ହଜାଇଲ ଖାଲି
ହଜାଇଲ ମୁଇଁ ବନ୍ଟୁଆଟିଏ,
ଉଦରେ ହରଣ ଆସୁ ସେଇଦିନ
ଖାଇବ ତୋ ସାଥି ବନ୍ଟୁଆଟିଏ !"

# ଇନ୍ଦ୍ରଧନୁର ଜନ୍ମ

ସନ୍ନ୍ୟାସୀ ଜଣେ । ବହୁ ଦୂରରେ ସେ ରହୁଥାଆନ୍ତି । ପାହାଡ଼ ପାଖରେ ତାଙ୍କର ଆଶ୍ରମ । ସେଇଠୁ ଗାଁ ବସ୍ତି ଅନେକ ଦୂର ।

ସନ୍ନ୍ୟାସୀ ଗାଁକୁ ଆସନ୍ତିନି । ତେଣୁ ଗା ସହିତ ତାଙ୍କର କୌଣସି ସମ୍ପର୍କ ନ ଥାଏ । ଆଉ ଗାଁ ଲୋକେ ନିଜ ଧନ୍ଦାରେ ଦିନରାତି ବୁଡ଼ି ରହି ଥାଆନ୍ତି । ସେମାନେ ସନ୍ନ୍ୟାସୀଙ୍କର ଖବର ରଖନ୍ତିନି ।

ଦୋଳି ସେଇ ଗାଆଁର ଝିଅଟିଏ ।

ଦୋଳି ଥିଲା ଅନାଥିନୀ । ଧର୍ମଘରର ଝିଅ । ହେଲେ, ତା' ବାବା ମା' ନ ଥିଲେ । ବହୁ ଆଗରୁ ସେମାନେ ଏ ଦୁନିଆଁ ଛାଡ଼ି ଚାଲିଯାଇଥିଲେ ସେପୁରକୁ । ବନ୍ଧୁବାନ୍ଧବ ସବୁ ଧନର । ଧନ ଦିଅ, ବନ୍ଧୁ ମିଳିବେ । ଧନ ନ ଦେଲେ ବନ୍ଧୁ ଛାଡ଼ି ପଳେଇବେ । ଧନର ପିଆସ ଏ ଦୁନିଆଁ ।

ଧନ ଯୋଉଯାଏ ଥିଲା, ତାକୁ ସଭିଏଁ ପଚରା ଉଚରା କରୁଥିଲେ । ମାତ୍ର ଧନ ସରିଲା, ଲୋକଙ୍କ ଭଲମନ୍ଦ ବୁଝିବା ବି ସରିଗଲା । ସେମାନେ ଚୂପ୍‌ଚାପ୍ ନିଜନିଜର ବାଟ ଦେଖିନେଲେ । ଦୋଳି ବୋଲି ଯେଉଁଝିଅଟି ଥିଲା, କି ଅଛି, ସେମାନଙ୍କୁ ସେକଥା ବୁଝିବ କିଏ ।

ଦୋଳି ଭଲ ଦିଆନିଆ କରୁଥିଲା । ବହୁ ଗରିବ ଗୁରୁବାଙ୍କୁ ସେ ସାହା ହେଉଥିଲା । ସବୁଠୁ ବେଶୀ ସେ ସାହାଯ୍ୟ କରୁଥିଲା ଏଇ ସନ୍ନ୍ୟାସୀଙ୍କି । ତାଙ୍କ ପାଇଁ ଭାତ, ପିଠା ନେଇ ଯାଉଥିଲା । ବେଳ ଅବେଳରେ ସେଠି ରହିଯାଉଥିଲା । ଧୀରେ ସେମାନଙ୍କ ଭିତରେ ଗୋଟେ ଭଲ ସମ୍ପର୍କ ଗଢ଼ି ଉଠିଲା । କେହି କାହାକୁ ଛାଡ଼ି ରହି ପାରିଲେନି ।

ଏମିତ ଅବସ୍ଥା ଆହୁରି ବଢ଼ିଗଲା । ସନ୍ନ୍ୟାସୀ ଓ ଢୋଲ ଏକାଠି ରହିଲେ । ଏଣେ ଢୋଲର ଘର ଦୁଆର ଉଜୁଡ଼ିଗଲା । ଲୋକେ ତା' ଜିନିଷପତ୍ର ଲୁଟିନେଲେ । ତା' ଘରର କୌଣସି ଚିହ୍ନବାଆଁ ବି ରହିଲାନି ।

କିଛିଦିନ ପରେ ସେ ଅଞ୍ଚଳରେ ଅକାଳ ପଡ଼ିଲା । ମେଘ ବରଷିଲାନି । ପାଣି ସବୁ ଜାଗାରୁ ଶୁଖିଗଲା । ଫସଲ ସବୁ ପୋଡ଼ିଗଲା । ଲୋକେ ବହୁତ କଷ୍ଟ ପାଇଲେ ।

ବରଷେ ଅକାଳ ହେଲା । ଦୁଇ ବରଷ ହେଲା । ତିନି ବରଷ ହେଲା । ଲୋକଙ୍କ ଦୁଃଖକଷ୍ଟର କୌଣସି ସୀମା ରହିଲାନି ।

ଲୋକେ ପଚାରିଲେ, ଏ ଅକାଳ ପଡ଼ିଲା କାହିଁକି ?

ବୁଢ଼ା ବୁଢ଼ାଏ କହିଲେ, "ଏଥିପାଖେ କିଛି ଗୋଟେ ଅନ୍ୟାୟ ହୋଇଯାଇଛି । ତା'ରି ଫଳ ଭୋଗୁଛୁ ଆମେ !"

ଲୋକେ ସମାଜ, ଗାଁସବୁ ଖୋଜାଖୋଜି କଲେ । କୋଉଠି ଅନୀତି ହୋଇଛି । ଅନୀତିଟା ପାପ । ଅନୀତି ଗୋଟେ ରାକ୍ଷସ । ସମାଜକୁ ଖାଇଯାଏ । ତେଣୁ ଅନୀତିକି ମୂଳରୁ ମାରିବାକୁ ହେବ ।

ସେମାନେ ତନ୍ନତନ୍ନ କରି ଖୋଜିଲେ । ସ୍ତ୍ରୀ ପୁରୁଷଙ୍କ ଦୈନନ୍ଦିନ କାମର ବିଚାର କଲେ । ହେଲେ, କିଛି ମିଳିଲାନି ।

ହଠାତ୍ ଏଇ ସମୟରେ ଜଣେ କହିଲା,<br>
"ଢୋଲ ବୋଲି ଯେଉଁ ଝିଅଟେ ଥିଲା ଆମ ଗାଁଆରେ,<br>
ନ ଥିଲେ ତାହାର ବାପ ମାଆରେ<br>
ଗଲା ସେ କାହିଁ ?<br>
ବାବାଜୀ ପାଖକୁ ଯାଉଥିଲା ସିଏ ଆହାର ନେଇ ।<br>
ତାହାକୁ ଧର,<br>
ସେଇ ହୋଇଅଛି ପାପର ମୂଳ ।"<br>
ସବୁଲୋକ ପାଟିକରି ଉଠିଲେ,<br>
"ସେ ଢୋଲ ସବୁ ପାପର ମୂଳ ।

ସେମାନେ ଠେଙ୍ଗାବାଡ଼ି ଧରିଲେ । ଭୁଜାଲି, ବରଛି, ଟାଙ୍ଗିଆ ଧରିଲେ । ସେମାନେ ଭେରେଭେକାର ଗରଜନ କରି ଧାଇଁଲେ ସନ୍ନ୍ୟାସୀଙ୍କ ଆଶ୍ରମ ଆଡ଼କୁ ।

ଦୂରରୁ ଲୋକଙ୍କ ପାଟି ଶୁଣିଲା ଦୋଳ । ସେମାନେ ଦଉଡ଼ି ଆସୁଥିବା ଦେଖିଲା । ସେମାନଙ୍କ ପାଟିଗୋଳ, ସେମାନଙ୍କ ହାତଗୋଡ଼ର ହଲାହଲ ଦେଖିଲା । ସେ ଜାଣିଗଲା, ଏ ଲୋକେ ତାକୁ ମାରିଦେବେ । ତାକୁ କୁଟିକୁଟା କରି କାଟି ପକାଇବେ । ତାର ମାଉଁସ ପୁଟ ପୁଟ କରି ଖାଇଯିବେ ।

ସେ ଆଶ୍ରମ ଭିତରକୁ ପଶିଗଲା । ସନ୍ନ୍ୟାସୀଙ୍କୁ କହିଲା, ସେମାନେ ଆସୁଛନ୍ତି । ସେମାନେ ଏସବୁ ଗାଆଁର ରାଗିଥିବା ହଜାର ହଜାର ଲୋକ । ତମେ ରକ୍ଷାକର ।

ସନ୍ନ୍ୟାସୀ ସ୍ଥିଅଟିର ହାତଧରି ପାଖରେ ବସିଲେ । ସେ ପ୍ରଭୁଙ୍କୁ ପ୍ରାର୍ଥନା କଲେ ।

ଲୋକେ ଆଶ୍ରମ ପାଖରେ ପହଞ୍ଚିଲେ । ପାଟିକଲେ, ମାରରେ ସେ ଦୋଳକୁ । ମାରରେ ସେ ବାବାଜୀକୁ । ସେମାନେ ଅଗଣା ଭାଙ୍ଗିଲେ । ରାଇଜଟା ଜଳିଗଲା ।

ଦୋଳ କି ସନ୍ନ୍ୟାସୀ କେହି ବାହାରିଲେନି । ସେ ବହେଁ ପାର୍ଥନା କରୁଥିଲେ ।

ଲୋକେ ଖାଦଳ, ଲୁହାଛଡ଼ରେ ଆଶ୍ରମ ଛାଡ଼ିଲେ ।

ଭିତରୁ ଶୁଭୁଥିଲା ପ୍ରାର୍ଥନାର ସ୍ୱର :

"ଆମକୁ ରକ୍ଷାକର,

ଠାକୁର ହେ ରକ୍ଷାକର ।"

ଲୋକେ ଆଶ୍ରମ ଭାଙ୍ଗୁଥିଲେ ।

ଠିକ୍ ସେଇ ସମୟରେ ଆଶ୍ରମର ଗୋଟିଏ କୋଣରୁ ଗୋଟିଏ ରଙ୍ଗ ଆଲୁଅର ଧାର ବାହାରି ଆସିଲା । ସେ ଆଲୁଅ ମାଡ଼ିଗଲା ଆକାଶଯାଏ । ଆଉ ସେଇ ଆଲୁଅ ଭିତରେ ଭାସିଗଲା ଦୁଇଟି ଛବି ।

ପ୍ରଥମ ଛବିଟି ସନ୍ନ୍ୟାସୀଙ୍କର ।
ଦ୍ୱିତୀୟଟି ଦୋଳର ।



ଦେବତାମାନେ ସେମାନଙ୍କୁ ଦୟା କଲେ । ସେମାନଙ୍କୁ ରକ୍ଷା କଲେ ଆଜ ଟିପିଟିପି ବରଷା ଦେଇ ।

ସେଇଦିନୁ ଇନ୍ଦ୍ରଧନୁ ଆସେ । ଦୋଳର ଅପରାଧ କଥା ଆମକୁ କହେ ଆଉ ଅନ୍ୟାୟ ନ କରିବାକୁ ସତର୍କ କରିଦିଏ । ଏକଥା ସତ କି ମିଛ କେବଳ ପ୍ରଭୁ ଜାଣନ୍ତି । ସିଏ ସିନା ଥରେ କ୍ଷମା କଲେ, ସବୁବେଳେ କ୍ଷମା କରିବେ ବୋଲି କିଛି ମାନେ ନାହିଁ ।

———